# ଅଜଣା ରାଇଜ୍ୟ କଥା

ସମ୍ପାଦକ:—

ପଦ୍ମଶ୍ରୀ ଡକ୍ଟର **ଲକ୍ଷ୍ମୀନାରାୟଣ ସାହୁ** ଏମ୍. ଏ.

ମୂଲ୍ୟ :—୧.୨୫ ନୂଆପଇସା

# ଉତ୍ସର୍ଗ ପତ୍ର

ଶ୍ରୀଯୁକ୍ତ ବୃନ୍ଦାବନ ଚନ୍ଦ୍ର ନାୟକ, ଓଡ଼ିଶା ପର୍ତ୍ତ ଓ ପରିବହନ
ବିଭାଗ ମନ୍ତ୍ରୀ ମହୋଦୟ ।

**ମାନ୍ୟବରେଷୁ,**

ଆପଣ ଜନ-ସେବା ତଥା ବିଦ୍ୟାନୁରାଗିତାର ଏକ ଚରମ ନିଦର୍ଶନ, ରାଜନୀତିର ଘନଘଟା ମଧ୍ୟରେ ଓତଃ-ପ୍ରୋତଃ ଜଡ଼ିତ ଥାଇ ମଧ୍ୟ ଆପଣ ଯେ କଳା ଓ ସାହିତ୍ୟର ଉତ୍କର୍ଷ ଲାଗି ସତତ ଚେଷ୍ଟିତ ସେଥିପାଇଁ ସମଗ୍ର ଓଡ଼ିଶା ଆପଣଙ୍କ ନିକଟରେ ଋଣୀ —

ମାନବିକ ଗୁଣର ଉତ୍କର୍ଷ ସାଧନ ପ୍ରକୃତ ପକ୍ଷେ ବ୍ୟକ୍ତି ଓ ସମଷ୍ଟିର ବହୁମୁଖୀ ଉନ୍ନତିର ପରିଚାୟକ-କ୍ଷମତାର ଲୋଭ ବା ଐଶ୍ୱର୍ଯ୍ୟର ବଡ଼ିମା ତା ନିକଟରେ କିଛି ନୁହେଁ । ଆପଣ ସେଇ ମାନବିକତାର ପ୍ରତୀକ ଯାହାପାଇଁ ଅଳ୍ପ ବୟସରେ ଆପଣ ଏତେ ଜନପ୍ରିୟ ହୋଇପାରିଛନ୍ତି ।

ଆପଣ ଜାଣନ୍ତି ବ୍ରହ୍ମବିଦ୍ୟା ସମିତି ଜାତିବର୍ଣ୍ଣ ନିର୍ବିଶେଷରେ ଏକ ବିଶ୍ୱ ସଂଗଠନ ଯାହାର କାମ୍ୟ ଆତ୍ମାର ଚରମ ବିକାଶ ଓ ମାନବିକତାର ପରିସ୍ଫୁଟନ । ଆପଣ ତାହାର ଏକ ଗତାନୁଗତିକ ସଭ୍ୟ ନ ହେଲେ ମଧ୍ୟ ସେଇ ଆଦର୍ଶର ଏକ ପ୍ରକୃତ ନିଦର୍ଶନ । ସେଇଥି-ପାଇଁ 'ଆଜି' ଏହି ସମିତିର ଭୁବନେଶ୍ୱରସ୍ଥ ଶାଖା ଅନୁଷ୍ଠାନର ପ୍ରଥମ ଅବଦାନ ଆପଣଙ୍କର କରକମଳରେ ଅର୍ପଣ କରୁଛୁ । ଆଶା ଓ ବିଶ୍ୱାସ ଆପଣଙ୍କପରି ସଜ୍ଜନ-ଙ୍କର କୃପା ଓ କଲ୍ୟାଣରୁ ଆମ୍ଭମାନଙ୍କର ଆଶା ଓ ଆକାଙ୍କ୍ଷା ଅଚିରେ ରୂପାୟିତ ହେବ । ଇତି ।

ଆପଣଙ୍କର ଗୁଣମୁଗ୍ଧ
ଭୁବନେଶ୍ୱର ବ୍ରହ୍ମବିଦ୍ୟା ସମିତିର ସଭ୍ୟବୃନ୍ଦ

# ମୁଖବନ୍ଧ

ଏହି ବହି ଖଣ୍ଡିକରେ ଯେଉଁ ବିଷୟର ଅବତାରଣା କରାଯାଇଛି ତାହା ଓଡ଼ିଆ ସାହିତ୍ୟରେ ସମ୍ପୂର୍ଣ୍ଣ ଅଭିନବ ଓ ଅନବଦ୍ୟ । ବିଜ୍ଞାନ ଓ ବୈଜ୍ଞାନିକ ଯାହା କହନ୍ତୁ ନା କାହିଁକି ପୃଥିବୀରେ ସବୁ ଦେଶରେ ସବୁ ଧର୍ମରେ ଏବଂ ସବୁ ଜାତି ମଧ୍ୟରେ ପ୍ରେତତତ୍ତ୍ୱ ଏବଂ ଭୌତିକ ବିଶ୍ୱାସ ହିତ୍ୟପୂ ଯୁଗ ଯୁଗ ଧରି ଚଳି ଆସୁଅଛି । ବିଂଶ ଶତାବ୍ଦୀରେ ପଦାର୍ଥ ବିଜ୍ଞାନର ଉନ୍ନତି ଯୋଗୁଁ ବହୁଏ ଲୋକଙ୍କର ବିଶ୍ୱାସ ଶିଥିଳ ହୋଇ ଆସିଥିଲା । ଠିକ୍ ଏତିକିବେଳେ ରୟେଲ ସୋସାଇଟିର ପ୍ରେସିଡେଣ୍ଟ ବିଶ୍ୱବରେଣ୍ୟ ବୈଜ୍ଞାନିକ ସର୍ ଅଲିଭର ଲଜ୍ ତାଙ୍କ ଯୁଦ୍ଧ ନିହତ ପୁତ୍ର ରେମଣ୍ଡ୍ ଲଜକୁ ଦେଖି ଓ ତାହାଠାରୁ ନାନାବିଧ ତଥ୍ୟ ସଂଗ୍ରହ ଏକ ବୃକାଣ୍ଡ ପ୍ରେତତାତ୍ତ୍ୱିକ ଗ୍ରନ୍ଥ ପ୍ରକାଶ କଲେ । ଏହା ବିଜ୍ଞାନ ଜଗତରେ ଚହଳ ପକାଇ ଦେଲା ଏବଂ ସେ ସମ୍ବନ୍ଧରେ ବେଧ ଗୁରୁତ୍ୱ ଦେଇ ଏହି ପ୍ରେତତତ୍ତ୍ୱକୁ ପୂର୍ଣ୍ଣ ବୈଜ୍ଞାନିକ ପ୍ରଣାଳୀରେ ଗବେଷଣା କଲେ । ଆଜି ବିଶ୍ୱସାରା ପ୍ରାୟ ସବୁ ସଭ୍ୟ ରାଜ୍ୟରେ ପ୍ରେତତତ୍ତ୍ୱ ସମିତିମାନ ପ୍ରତିଷ୍ଠିତ ଏବଂ ବହୁ ପାରଲୌକିକ କଥାବସ୍ତୁ ନିର୍ଭରଯୋଗ୍ୟ ଭାବେ ପ୍ରମାଣିତ । ଏହାପରେ ଦ୍ୱିତୀୟ ମହାଯୁଦ୍ଧ ପୂର୍ବରୁ ଜର୍ମାନୀର କାର୍ଲ କୁକେ ନାମକ ବୈଜ୍ଞାନିକ ଗୋଟିଏ ଲେନ୍ସ ପ୍ରସ୍ତୁତ କରି ତଦ୍ୱାରା ବହୁ ଅଶରୀରୀ ଆଲୋକ ପିଣ୍ଡମାନ ବାୟୁମଣ୍ଡଳରେ ଦେଖିଥିଲେ । ତାଙ୍କ ମତରେ ସେ ସବୁ ପ୍ରେତ ।

ଏଠାରେ ଗୋଟାଏ କଥା ମନେ ରଖିବାର ଅଛି । ଆମର ଲୋକେ ସାଧାରଣତଃ ଭୂତ ଓ ପ୍ରେତକୁ ଏକ ଶ୍ରେଣୀର ମନେ କରିଥାନ୍ତି । ବସ୍ତୁତଃ ଏହା ନୁହେଁ । ଭୂତ ହେଉଛି ଭିନ୍ନ ସ୍ତରର ଅଶରୀରୀ ଜୀବ ଏବଂ ମନୁଷ୍ୟ ଅଧିକ ଶକ୍ତିସମ୍ପନ୍ନ । ପଞ୍ଚ ଭୌତିକ

ମସ୍ତିଷ ଯେପରି ପୃଥିବୀରେ ନିର୍ଦ୍ଦିଷ୍ଟ କାଳପାଇଁ ଅବସ୍ଥାନ କରିଥାଏ
ଭୂତମାନେ ସେହିପରି ବାୟବୀୟ ଶରୀର ଧାରଣ କରି ଶୂନ୍ୟରେ
ବିଚରଣ କରନ୍ତି ନିଜର ନିର୍ଦ୍ଦିଷ୍ଟ ଆୟୁକାଳ ଶେଷ ପର୍ଯ୍ୟନ୍ତ । ଏହି
ବିଷୟ କ୍ଷେତ୍ରରେ ଅନେକ ଜଣା ଶୁଣା ବ୍ୟକ୍ତି ନିଜର ଅଭିଜ୍ଞତା କଥା
ଲେଖି ଅଛନ୍ତି । ତର୍କ ଯୁକ୍ତି ବଳରେ ବୁଦ୍ଧିଜୀବି ହୁଏତ ତାକୁ ଖଣ୍ଡନ
କରିପାରେ ମାତ୍ର ତଦ୍ୱାରା ସତ୍ୟଜ୍ଞାନପ୍ରବୃଦ୍ଧ ବିଶ୍ୱାସକୁ ଖଣ୍ଡନ
କରିବା ସମ୍ଭବ ନୁହେଁ । ଅନ୍ଧବିଶ୍ୱାସ ଏବଂ ଭ୍ରମାତ୍ମକ ଧାରଣାରେ
ପଡ଼ି ଦୁର୍ବଳ ବ୍ୟକ୍ତି ବେଳେ ବେଳେ ଅତିନ୍ଦ୍ରିୟ ପୂଜା ଉପଲବ୍ଧି କରି-
ଥାଏ ଏହା ଅବଶ୍ୟ ସତ୍ୟ କିନ୍ତୁ ପୂର୍ବୋକ୍ତ ବର୍ଣ୍ଣିତ ବହୁ ବର୍ଣ୍ଣନା ଅତିନ୍ଦ୍ରିୟ
କ୍ରିୟା ଶକ୍ତି ନୁହେଁ, ସାଧାରଣ ଇନ୍ଦ୍ରିୟ ଗ୍ରାହ୍ୟ ବିଷୟ । ମୁଁ ନିଜେ
ବିଜ୍ଞାନର ଛାତ୍ରଥିଲି । ଦମ୍ଭ ଓ ଯୁକ୍ତି ବଳରେ ଅନେକ କିଛି ଉଡ଼ାଇ
ଦେଇଛି ତଥାପି ସୁସ୍ଥ ଶରୀର ଓ ସୁସ୍ଥ ମସ୍ତିଷ୍କରେ ମୁଁ ଏପରି
କେତେଗୁଡ଼ିଏ ଦୃଶ୍ୟ ଦେଖିଛି ଯାହାକି ଭୌତିକ ଛଡ଼ା ଅନ୍ୟ
କିଛି ନୁହେଁ ଏବଂ ସେ କଥା ମନେ ପକାଇଲେ ଏବେ ମଧ୍ୟ ଲୋମ
ଟାଙ୍କୁରି ହୁଏ । ମୁଁ ତ ନଗଣ୍ୟ, ଆମ ଦେଶରେ ଶତ ଶତ
ମହାନ ବ୍ୟକ୍ତିଙ୍କ ଜୀବନରେ ବହୁ ଅଲୌକିକ ଦୃଶ୍ୟ ଘଟିଅଛି
ଏବଂ ତାଙ୍କମାନଙ୍କ ଜୀବନୀରେ ବର୍ଣ୍ଣିତ । ଏମିତି ଏକ ଦୃଶ୍ୟ କଟକ
ସହରରେ ରାଧାରମଣଦେବଙ୍କ ଅଷ୍ଟପ୍ରହରୀ ବେଳେ ୬ କୃଷ୍ଣ
ପାଳିତଙ୍କର ଘରଦ୍ୱାରରେ ଘଟିଥିଲା ।

ଆମ ଘରର ଗୋଟିଏ ଘଟଣା ଏଠାରେ ଅପ୍ରାସଙ୍ଗିକ ହେବ
ନାହିଁ । ମୋର ବଡ଼ବାବା ଡାକ ଇଲାକାରେ ୨୨ ବର୍ଷ କାମ କରି
ଶାରୀରିକ ଅଶକ୍ତତାବଶତଃ ପେନ୍‌ସନ୍ ନେଇ ନାଟୋରଠାରୁ
ଘରକୁ ଆସିଥିଲେ । ସେ କଲିକତାରୁ ନାଟୋରକୁ ବଦଳି ହୋଇ-
ଥିଲେ କାରଣ ସେଠାରେ ଦେଶୀ ସାହେବ ନିଜର ସ୍ତ୍ରୀ ଓ ସଦ୍ୟଜାତ

ନିଶ୍ଚୟ ମନ ଆତ୍ମହତ୍ୟା କରିଥିଲା । ବଡ଼ବାବା ସେଠାକୁ ଯାଇ ପୁର୍ଜ ନେବା ପୂର୍ବରୁ ଟଙ୍କା ଗଣୁଥିଲେ ରାତି ୮ଟା ଯାଏ । ଦାଣ୍ଡରେ ଜଣେ ଚପରାସୀ ଠିଆ ରହି ଟଙ୍କା ଥଳି ବନ୍ଧାଇ ଦେଉଥିଲା । ହଠାତ୍ ସେ ଘର ପରି ୩ଥର ଏକ ମେମ୍, ଏକ ସାହେବ ଏବଂ ଘୁଞ୍ଚ ଶିଶୁ ସମେତ ମେମ୍ ସାହେବଙ୍କୁ ଦେଖିଲେ ; ସେମାନେ ବଡ଼-ବାବା ଟଙ୍କା ଗଣୁଥିବା ଝରକା ପାଖରେ ଆସି କେବଳ Babu Time Please ବୋଲି ୩ ଥର ପଚାରୁଥିଲେ ଏବଂ ଶିଶୁଟାକୁ ହିଡ଼ିକ ପଟା ଉପରେ ଥୋଇଥିଲେ । ଚପରାସୀ ତାଙ୍କୁ ଦେଖି ବାବୁ ସାହେବ ଆସିଲେ ବୋଲି ଉତ୍ତରରେ ପାଟି କଲା । ସେତେବେଳେ ବଡ଼ବାବା ମୁଣ୍ଡ ଉଠାଇ ତାଙ୍କୁ ଦେଖିଥିଲେ ମାତ୍ର ସେମାନେ ଉଭେଇ ଗଲେ । ବଡ଼ବାବା ସାହେବଙ୍କୁ କେବେ ଦେଖି ନ ଥିଲେ ମାତ୍ର ସେ ଯେଉଁ ବର୍ଣ୍ଣନା ଦେଲେ ତାହା ସାହେବ ମେମଙ୍କର ଅବିକଳ ରୂପ । ସେହିଦିନୁ ବଡ଼ବାବା କେବଳ ଦିନ ମଧ୍ୟରେ ବହୁବାର Time Please କରିବାକୁ ଲାଗିଲେ ଏବଂ ଡାକ୍ତରଙ୍କ ମତରେ ଏହା ହିଁ ତାଙ୍କର Invalid ପେନସନ୍ ନେବାର କାରଣ ହେଲା । ଘରକୁ ଫେରି ମଧ୍ୟ ବର୍ଷାଧିକକାଳ ଏପରି କରିଥିଲେ ଏବଂ ଶେଷକୁ ଏକ ଗୁଣିଆ ତାଙ୍କୁ ଭଲ କରିଥିଲା । ଭଲ ହୋଇ ସେ ପ୍ରାୟ ୩୨ ବର୍ଷ ଜୀବିତ ଥିଲେ । ଆଜି ଗୋଟିଏ ଘଟଣା ମୁଁ ନିଜେ ଜାଣେ ।

୬ ସୁଦାମବାବୁ ଏକସେଟ୍ ଚେନ୍‌ଲଗା ସୁନା ବୋତାମ ଡାକ୍ତର ଏକରାମ ରସୁଲଙ୍କୁ ଉପହାର ଦେଇଥିଲେ । ୧୦ ବର୍ଷ ପରେ ତାହା ଚୋରି ଯାଇଥିଲା । ସେତେବେଳକୁ ସୁଦାମବାବୁ କିମ୍ବା ତାଙ୍କର ପୁତ୍ର କିଶୋରବାବୁ କେହି ଜୀବିତ ନ ଥିଲେ । ଡାକ୍ତର ମଧ୍ୟ ଏକଥା କାହାକୁ କହି ନ ଥିଲେ ଅଥଚ ବ୍ରହ୍ମପୁରଠାରୁ ୬ନଲ-ମୋହନ ପଟ୍ଟନାୟକ କଟକ ଆସି ତାଙ୍କୁ ଆଜି ଏକସେଟ୍ ବୋତାମ

।

ଦେଇ କହିଥିଲେ ଡ଼ାକ୍ତର ତୁମ ବୋତାମ ସ୍ଥେର ହୋଇଛି ବୋଲି କିଶୋର ମୋତେ ବିରମ୍ବର କଥା ଆଜି ଏକସେଠ୍ ତୁମକୁ ଦେବାକୁ ମିନତି କରିବାରୁ ମୁଁ ଏହା ଦେଉଅଛି ।" ଯେଉଁମାନେ ଅମୃତବଜାର ପତ୍ରିକା ମାଲିକଙ୍କ ପରିବାର କଥା ଜାଣନ୍ତି ସେମାନେ ପରପାରେ ନାମକ ବହି ଖଣ୍ଡି ପଢିଥିବେ । ସେଥିରେ ସେ ବହୁ ନିଜ ପରିବାରର ବହୁ ପାରଲୌକିକ କଥା ବର୍ଣ୍ଣନା କରି ଅଛନ୍ତି । ବସ୍ତୁତ ଆଜିକାଲି ଏହି ତତ୍ତ୍ୱର କ୍ରମବର୍ଦ୍ଧିଷ୍ଣୁ ଗବେଷଣା ହେଉଅଛି । ଅତଏବ ଏ ସମ୍ବନ୍ଧରେ ଏହି ଓଡ଼ିଆ ବହି ଖଣ୍ଡିକ ବହୁ ଜିଜ୍ଞାସୁ ଓ କୌତୁହଳୀ ପାଠକଙ୍କର ଜ୍ଞାନବୃଦ୍ଧି ତଥା ଚିତ୍ତ ବିନୋଦନ କରିବ ସନ୍ଦେହ ନାହିଁ । ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ବାବୁ ଜୀବନର ସାୟାହ୍ନରେ ଏଭଳି ଖଣ୍ଡିଏ ବହି ପ୍ରକାଶ କରିବାରୁ ମୁଁ ତାଙ୍କୁ ଭକ୍ତି ପୂର୍ଣତଃ ସମ୍ବର୍ଦ୍ଧନା ଜଣାଉଅଛି ଏବଂ ଆଶା କରୁଅଛି ଏହା ଜନପ୍ରିୟତା ଅର୍ଜନ କରିବ ।

ଲଲ୍ ନଗେନ୍ଦ୍ରକୁମାର ଗୁପ୍ତ



# ଅନ୍ୟ ଜଗତର କଥା

ଶ୍ରୀ ସୁରେନ୍ଦ୍ରନାଥ ଦାଶ

( ୧ )

ପ୍ରାୟ ଦିନ ଗୋଟାଏ, ଉଦୁଉଦିଆ ଖରାବେଳ । ନଗୁଟିଆ ବୈଶାଖୀ ଝଞ୍ଜା ବହି ଚାଲିଛି । ପଖାଳ ଦିଟା ଖାଇଦେଇ ଶୁକାଦାସ ଆସିଥିଲା ଚାଳକୁ ଛନ କରି । ଖରା ବରଷାକୁ ଖାତର ନାହିଁ ତାର । ଅଳସ କଣ ଜାଣିନାହିଁ ସେ । ପରଘରେ ସେ ଚାକରି କରିଛି ସତ କିନ୍ତୁ ପର ବୋଲି କେବେ ସେ ଭାବେ ନାହିଁ । ରକ୍ତର ସମ୍ପର୍କ ଅଛି, ମାଲିକ ତାର ଭାଇ । ବେଳେବେଳେ ଶୋଷ ବା ଭୋକ କଲେ ପାନ ଖଣ୍ଡେ ଖାଇ ସେ ତାର ଭୋକ ମାରିଦିଏ । ବଡ଼ କଆରୀ ଖଣ୍ଡିକ ଆଜ ପୂରା ୩ ଓର ଚଷ କରିଯିବ ବୋଲି ସେ ସକାଳୁ ଅଣ୍ଟା ବାନ୍ଧି ଆସିଛି । ଆଉ ଅଳ୍ପଏ ଦଣ୍ଡ ହୋଇଗଲେ ହଳକାମ ସରିବ-ମାତ୍ର ଖରାର ଦାଉ ଖୁବ୍ ଅସହ୍ୟ-ଏଣେ ପେଟ ଭୁଡ଼ାଇ ଭୁଡ଼ାଇ ଡାକ ଦେଲାଣି । କଏ କୁଆଡ଼େ ଗଲେଣି । ଦିଗନ୍ତ

---

ବିସ୍ମୃତି ଗର୍ଭେ ପଶୁଛି ଯାଇ ଦିନ ଦିନକର କାର୍ଯ୍ୟାବଳୀ
ଆଲୋକ ଅନ୍ଧାର ସବୁ ଯାଉଛି ଠେଲି ପେଲି ।

ଶୁକା ଏକାକୀ ହଳ କରୁଛି, ବଳଦର ତାକୁ ଶୁଝି ଗଲଣି । ଲଙ୍ଗୁଡ଼
ମୋଡ଼ ପାଞ୍ଚଣର ପ୍ରହାର ପରେ ପ୍ରହାର ଦେଲେ ମଧ୍ୟ ଆଉ ଘୁଞ୍ଚୁ
ନାହାନ୍ତି । ଯାହାହେଉ କୌଣସି ମତେ କାମଟକ ସାରିଦେଇ
ହଳ ବାଡ଼େଇ ଚାଲିଲା ଶୁକା । ଘରମୁହଁ ହେଉଥିବାରୁ ଗୋରୁଙ୍କର
ପାଦ, ୨ ଗୁଣରେ ପଡ଼ୁଛି । ବେଳେ ବେଳେ ଲଙ୍ଗଳ ଜୁଆଳି
ସହିତ ଦଉଡ଼ି ଚାଲି ଯାଉଥିଲେ ମଧ୍ୟ ଆଉ ଘୁଞ୍ଚୁ ନାହାନ୍ତି । ଶୁକାଦାସ
ଅତି ପୋଷା ଓ ମାନବାର କଥା ଓ ବନା ସ୍ନେହପର ନୁହନ୍ତି । ଯାହା-
ହେଉ କେଇଟା ମିନଟ୍‌ରେ ଆସି ଦାଣ୍ଡ ଦୁଆରେ ହାଜର । ବଳଦ
ଫିଟାଇ ଦେଇ ଶୁକା ଦାଦ (ଲେଖକର ସମ୍ପର୍କ ନାହିଁ) ଘରେ ନେଇ
ଲଙ୍ଗଳ ଓ ଜୁଆଳି ରଖିଦେଇ ଏତେ ପାଟିକରି ମାଗି ଉଠିଲା
ମଢ଼ିଆଣି ଭାଉଜଉ, ଟିକିଏ ତେଲ ଦିଅ, ଗାଧୋଇ ଯିବା । ଶୁକାର
ଡାକ ସବୁବେଳେ ରୁକ୍ଷ ମାତ୍ର ତା ଭିତରେ ନଥାଏ ଟିକିଏ ମାତ୍ର
ଆବିଳତା ବା ଆଜିକାଲିକାର ଭଣ୍ଡାମୀ । ପୂର୍ଣ୍ଣ ସରଳତାର ପ୍ରତୀକ
ସେ-ପେଟ ଓ ମୁହଁ ଏକା, ମାଲପା ଠୋପାଟାଏ ମୁଣ୍ଡରେ ମାରିଦେଇ
ଶୁକାଦାଦ ଗଲା ନଈକି ଗାଧୋଇ । ଗାଧୁଆ ସରିଲା ଦୁଇ ମିନଟ୍‌ରେ,
ଦାଣ୍ଡ ପିଣ୍ଡାରେ ଲୁଗାଟାକୁ ଶୁଖାଇ ଦେଇ ଗଲା ଘର ଭିତରକୁ
ଖୁବ୍ ବ୍ୟସ୍ତରେ । ଏକେ ପିଲା ବଅସ—ବେଳ-ଆସି ଦୁଇ
ପହର ହେଲଣି, ତୋରାଣି ଟୋପାଏ ହେଲେ ପିଇନାହିଁ । ପିଲା-
ଛୁଆଟ କେହି ନାହାନ୍ତି, ଶୁକାଦାଦ ନିଃସ୍ବ ହୋଇଛି ତାର ଭାଉଜ
ବୋଉକୁ, ପେଙ୍କ ତାଠୁ ବୟସରେ ୨/୩ ବର୍ଷ ବଡ଼-ଦେଖିବାକୁ
ହିପଣ୍ଡ କାଳୀ, ଗଠନ ମଧ୍ୟ ଅସୁନ୍ଦର, ସେ ଯାହାହେଉ ପଛକେ

---

ମୁଁ ତ ବୁଝିପାରେ ନାହିଁ, କାହିଁ ଅଛି ମୁହିଁ, କାହିଁ ଯାଏଁ
ପଥଟ ପଡ଼ିଛି, ଯାଉଛି ଯେଉଁଆଡ଼େ ଇଚ୍ଛା, କାହିଁ ଧାଏଁ ।

ଘରବୋହୂ ଘରେ ରହିଲା । ଖୁବ୍ ଅଳ୍ପ ଖର୍ଚ୍ଚରେ ବଡ଼ୋଝିଅ କାମଟା ଛ
ଚାମିଲି ହୋଇଗଲା । ଭୋକ ପେଟରେ ଶୁକାଦାଦା ଦୁଆର ମଝିକୁ
ଆସି ଦେଖେ ପଦ୍ମାବୋଉ ଖୁଡ଼ୀ ବାଳମୁକୁଳା କରି ଘରଆଡ଼କୁ
ମୁହଁକରି କଣ ଏଣୁ ତେଣୁ ଗୁଡ଼ାଏ ଗପୁଚି, ବାରଗୁଣ୍ଡଳିଆ କରି
ଗପୁଛି । ଶୁକାଦାଦା ପଚାରିଲା, କଲେ ସେଠି କଣ ରଣଚଣ୍ଡୀ ସାଜ
ବସିଛୁ । ଖାଇବାକୁ ଦେବୁ ନାହିଁ କି ? ମଝିଆଣୀ ଗାଉଁଜାଉଁ କହୁଥିଲେ
କଣ ମାଛ ତରକାରୀ ଦେଇଛନ୍ତି । ଆଣିଲୁ ବଟ ମୁଁ ଖାଏ । ଶୁଣି
ନ ଶୁଣିଲାପରି ପଦ୍ମାଖୁଡ଼ୀ ବସିଛି । କଣ ଗୁଡ଼ାଏ ଗପୁଛି, ଶୁକାଦାଦା
ରାଗି ପଚାରିଲା । କଲେ ତୋ କାନକୁ ଶୁଭୁନାହିଁ କି ? ନା ବଟା
ଦୁମ୍ ଦାମ୍ ଗୃହୁଁ ଛୁ । ଶୁକାଦାଦା ତୁଣ୍ଡରୁ କଥା ନ ସରୁଣୁ ଆଖିବଟାକୁ
ମୁରୁଝି ଦେଇ ଦାନ୍ତକୁ କଡ଼ମଡ଼ କରି ପଦ୍ମାଖୁଡ଼ୀ ଆସି ତା ପାଖରେ
ହାଜର । ମାରେ କି ନମାରେ । କରେ ଖଣ୍ଡିଆ, ତୋ'ରତ ଭାରି
ବହପ ବଢ଼ିଗଲାଣି, ମୋରି ଖାଇ ପୁଣି ମୋ ଉପରେ ବଡ଼େଇ
କରୁଛୁ । ଟୋକା ବି ରୁଖଣ୍ଡିର ହବୁନାହିଁ, କରେ କଣ ଚିହ୍ନି ନାହୁ
ମୋତେ ? ଏ କଥା ଶୁଣି ବିଚାରୀ ଶୁକାଦାଦାର ଭୋକ ଶୋଷ
କୁଆଡ଼େ ଉଭାଇଗଲା, ଅଧାକାନ୍ତି ଆରପଟେ ଗଣିଆ ବୋଉ ଖୁଡ଼ୀ
ବସିଥିଲା, ସେ ବାପର ଖୁଡ଼ୀ, ପୁଅର ଖୁଡ଼ୀ, ସମସ୍ତଙ୍କର ଖୁଡ଼ୀ ସେ ।
ଅବଶ୍ୟ ଏତେ ବେଶୀ ବୟସ ତାର ନୁହେଁ, ମାତ୍ର ସେ ବାହା-
ହୋଇଥିଲା ବୁଢ଼ା ବରକୁ । ମଣିଦାସଙ୍କୁ ପ୍ରାୟ ୫୦ ବର୍ଷ ବୟସରୁ
ଉର୍ଦ୍ଧ ହେବ । ସେତିକବେଳେ ସେ ଧରିଥିଲା ଗଣିଆ ବୋଉ ଖୁଡ଼ୀର
ହାତ, କାଳର କବଳରେ ସ୍ୱାମୀ ତା'ର ଆଉ ସଂସାରରେ ନାହିଁ,

---

ଜନ୍ମୁଛି ମୁଣ୍ଡରେ ବାଳ, ଆଙ୍ଗୁଠିରେ ନଖ, ଦେଖ ଦେଖ ଦେଖ
କାଟୁଛି ମୁହଁ କେତେଥର, ପୁଣି ଉଠେ ଥରକୁ ଥର ବଡାବ ଏ ଭେଖ

ମାତ୍ର ଗୋଟିଏ ପୁଅ କଲିକତାରେ । ରୋଜଗାର ପତ୍ତର ସେମିତି
ନାହିଁ, କେତେବେଳେ କେମିତି ହାବୁଡ଼ା, ଝଟକା ବଦଳିଆ କାମରୁ
ସର୍ଦ୍ଦାରକୁ ରୋଜରୁ ଦୈନିକ କଟ୍ଟି ଦେଇ ଯାହା ବା ଦି ପଇସା
ରୋଜଗାର କରେ ସେ ସବୁ ଚଳିଯାଏ ଖୋରାକରେ । ପାଖରେ
ଅଛି ଓଲେଇ ଝିଅ । ତା ବେକରେ ବନ୍ଧା, ହାଡ଼ ଦୁଇଖଣ୍ଡି ମାତ୍ର
ତାର, ସେଇଥିରେ ତାର ଧାନକୁଟା ଚଳଯାଏ । ଗଣ୍ଡିଏ ପଖାଳ ଓ
ଖଦପକା ଅନାବନା ଶାଗ ଟିକିଏ ଖାଇ ଗଣିଆବୋଉ ବାନ୍ଧୁଥିଲ
ଟିକିଏ ପୁରୁଣା ସାଇକେ । ମହିଆଣୀ ଠାରୁ ପାନ ଖଣ୍ଡେ ଖାଇବ
ମାଗିକରି, ତାରି ବୟସର ମହିଆଣୀ ସଙ୍ଗରେ କଣ ୨ପଦ କଥାବାର୍ତ୍ତା
ହେବ । ଶୁଣିଲ ଏପାଖରୁ ପଦ୍ମାର ଗର୍ଜନ, ଶୁକାଦାଦ କହିଲ
ଆଲେ ଖୁଡ଼ୀ ଟିକିଏ ଆଇଲୁ ଏଆଡ଼େ, ଏ ଅଲକ୍ଷଣୀଟା କାହିଁକି
ଆଜି ଏଡ଼େ ଉଡୁରୁଛି, ଆର ପାଖରେ ବୁଲିଆସି ଗଣିଆ ବୋଉ
ଦେଖେ ପଦ୍ମା ରାଗରେ ଜର ଜର, ଏକେ ନିପଣ୍ଡକାଳୀ ସେଥିରେ
ବାଳମୁକୁଳା ଓ ଦାନ୍ତ କଡ଼ମଡ଼ ଦେଖି ଗଣିଆ ବୋଉ ପୁରା ଚୁନଆ
ହୋଇଗଲା । ପଚାରିଲା, କଲେ ପଦ୍ମା, ପୁଅ ଆସି ସେତେବେଳରୁ
ଛିଡ଼ା ହେଲଣି ତାକୁ ଖାଇବାକୁ ନ ଦେଇ ଏମିତି ଗୋଟାଏ କଣ
ହଉଚ୍ଛ ବା ? ଏତେ ନାଁ ପକାଇବାକୁ ମନ ହେଉଛି । ବୁଢ଼ୀ ଏତିକି
କହୁ ଯାଏ କୁଆଡ଼େ ? ପଦ୍ମା ଖୁଡ଼ୀ ଝଟ୍‌କିନ ତା କାନଟାକୁ ଧରି-
ପକାଇ କହିଲା ହଇଓ ଗଣିଆ ବୋଉ ଖୁଡ଼ୀ ଏ କର୍ପୁର ଗଲେ
ସୁଦ୍ଧା କନା ପଡ଼ିଛି । ଏ ଖଣ୍ଡିଆ ମୋତେ ଚହ୍ନି ନାହିଁ । ମତେ
କହୁଚ ହଇଲେ ସେମିତି କାହିଁକି ହେଉଛୁ ? ଏ ତୁମ୍ଭି ତୋଫାନ

---

କାହାର ଇଙ୍ଗିତେ ଫୁଟୁଛି ଫୁଲ, ଧାଉଁଛି ଭ୍ରମର କି ଆଶା ନେଇ
ପ୍ରକୃତିର ସନ୍ଧାନ କରିବ କିଏ, ଚୁଲୁଛି ସେ ରହିଥିବ ଯେତେଦିନ ମହୀ

ଦେଖି ଗଣିଆ ବୋଉ ଖୁଡ଼ୀ ଅବାକ୍ । ଶୁକାଦାକୁ କହିଲା ଗଲୁ ଶୁକା ଟିକଏ ମଝିଆଣୀ ଭଉଜେଉଙ୍କୁ ଡାକ ଆଣିବୁ । ଇଲେ ମା' ଏଇଟା କାହିଁକ ଏମିତ ହେଉଛି, କଣ କରିବ ବଞ୍ଚିବ ହକା । ତା ମୁହଁଟି ସେତେବେଳକୁ ଶୁଖିଗଲାଣି । ପେଟ ଭୋକ ପେଟରେ ମଲାଣି ଏ ଯାଇ ପହଞ୍ଚିଲା ପୂରୁଣା ସାଇରେ ଓ ମଝିଆଣୀ ଭଉଜଉଙ୍କ ପାଖରେ । ଶୁକାକୁ ଦେଖି ମଝିଆଣି କହି ବସିଲେ କରେ ଶୁକା ତୁ କଣ ଖାଇ ନାହୁଁକି ଏତେବେଳେଯାକେ-କାନ୍ଦ କାନ୍ଦ ହୋଇ ଶୁକା କହିଲା ଭଉଜ ବୋଉ-ମୋ ଖାଇବା କଥା ତେଣିକ ଥାଉ ତମେ ଟିକଏ ଆମ ଘରକୁ ଆସ । ଶୁକାର ବ୍ୟଗ୍ରତା ଓ ବ୍ୟସ୍ତ ଦେଖି ବୁଢ଼ୀ ଭଉଜଉ ପଛେ ପଛେ ଚାଲିଲେ ଘରଟି ବଡ଼ ଛୋଟ କୋଠ ମଧ୍ୟ ମାଇପେ ରୁଣ୍ଡ ହୋଇଛନ୍ତି । ମଝିଆଣୀ ଆସିବାରୁ ସମସ୍ତେ ବାଟ ଛାଡ଼ିଦେଲେ । ଶୋଇବା ଘର ଓ ରନ୍ଧାଘର ମଝିରେ ଗୋଟିଏ ଗୋହଣୀ, ହାତେ କି ମୁଣ୍ଡିଏ ପିଣ୍ଡା ସେଇଥିରେ ବସିଛି ପଦ୍ମା, କେତେବେଳେକେ ଆଖି କଟମଟ କରି ଚାହୁଁଛି । ବେଳେ ବେଳେ ବା କଣ ଗୁଡ଼ାଏ ଆଉଁ ସ୍ୟାଉଁ ଗପୁଛି ବସି । କହୁଛି ହଜ ମତେ ଏମିତ କଲା ଇତ୍ୟାଦି ଇତ୍ୟାଦି ମଝିଆଣୀଙ୍କୁ ଦେଖିଲାମାତ୍ରେ ସତେ ଯେପରି ପଦ୍ମାର ଢଙ୍ଗ ରଙ୍ଗ ବଦଳିଗଲା । ସାଙ୍ଗେ ସାଙ୍ଗେ ଓଢ଼ଣାଟିକୁ ଟାଣିଦେଇ ଟିକଏ ଆଡ଼ଉଇ ହୋଇ ବସିଲା, ମଝିଆଣୀ ବୋଉ ପଚାରିଲେ ହଇଲୋ ପଦ୍ମା । କଣ ଏ ସୁଆଙ୍ଗ ଲଗାଇଛୁ । ତତେ ଟିକଏ ଲାଜ ସରମ ନାହିଁ, ଟିକଏ ମୁହଁ ତଳକୁ ପୋତି ପଦ୍ମା କହିଲା ଅପା, ଆପଣ

---

କେତେ ବନ୍ଧ ବାନ୍ଧିଲ, କେତେ ବନ୍ଧୁ ଗଢ଼ିଲ ଭୁଲି କେତେ ଶତ୍ରୁତା ପୁଣି
ଏହିକି ମାନବ ? ଦାନବ ପଥରୁ ଉଦ୍ଧର ଆପଣାକୁ ଆପେ ଚିହ୍ନି

ବ ମୋତେ ଶଙ୍କି ପାରୁ ନାହାନ୍ତି, ହେଉ ସେ ମୋର ଭାଗ୍ୟ । ଆଗରୁ ମହିଆଣି ଶୁଣିଲେଣି ଯେ ତାଙ୍କର ସାନ ମୃତ ଯାଆ ପଦ୍ମାକୁ ଲଗିଛି, ମାତ୍ର ସନ୍ଦେହ ହେଲା ମନରେ । ସତେ ଯେପରି ପଦ୍ମା ଫୁଲେଇ ହୋଇ ବା ଟୋଟାଏ ତାମସା ଲଗାଇବାପାଇଁ ଏପରି କରୁଛି ବା ତା'ର ଅନ୍ୟ କୌଣସି କାରଣରୁ ମାନସିକ ବିକୃତ ହୋଇ ଯାଇଛି । ମହିଆଣୀ ବଡ ପାରିବାର ଓ ଜାଣିବାର ଲୋକ । ଗାଁଟିଯାକ ସମସ୍ତେ ତାଙ୍କୁ ଭଲ ପାନ୍ତି ଓ ଭକ୍ତି କରନ୍ତି ମଧ୍ୟ । କୋଉ କିଆରିରେ କେଉଁ ଧାନ କେତେ ବର୍ଷ ତଳେ ବୁଣା ହୋଇଥିଲା ମହିଆଣୀ ଜାଣନ୍ତି । ଘରେ ବସି କେଉଁ ଚକରେ ଜମି କେଉଁଠି ସେକଥା ମହିଆଣୀ ଜାଣନ୍ତି । ଖତ୍ ପୁହୁଣା ମୂଲିଆ ମଧ୍ୟ ବନ୍ଦନ ତନ୍ଦ୍ରା ବାରେ ତାଙ୍କ ପାଖରେ ହାର ମାନନ୍ତି । ବୟସର ଆଧିକ୍ୟ ହେଲେବି ମନର ଟାଣ ଭାଙ୍ଗିନାହିଁ, ଦର୍କାର ପଡ଼ିଲେ ୬୦ ବର୍ଷରେବି ଶହେ ପରଖ ଲୋକଙ୍କୁ ବାନ୍ଧି ବାଡ଼ି ଖାଇବାକୁ ଦେଇଦେବେ । ଯେ ଥରେ ମହିଆଣୀଙ୍କ ହାତରୁ ଖାଇଛି ସେ କେବେ ଭୁଲିବ ନାହିଁ । ସୁତରାଂ ତାଙ୍କ କଥାକୁ ଲୋକେ ଡକାଇ ରହିଥାନ୍ତି । ଝିକଏ ଥମିଯାଇ ମହିଆଣୀ ପଚାରିଲେ ତୁ କିଏ ? ପଦ୍ମା କହିଲା ଅପା ମୁଁ ଫର୍ ନଟିଆ ବୋଉ ଆପଣଙ୍କ ସାନଯାଆ । ପଚରା ହେଲା ତୋର ଆଉ କିଏ ଅଛି । ଖୁବ୍ ଧୀର ଅଥଚ ଦୁଃଖଭରା ହୃଦୟରେ ପଦ୍ମା କହିଲା କିଏ ଆଉ ଅଛି ? ନଟିଆ ଅଣିଆଙ୍କୁ ନେଇ ମୁଁ ଏଇ ମାଳଉଁଚହୁଡ଼ାରେ ଏ ପାଖ ସେ ପାଖ ହେଉଛି, ପଙ୍କଜ କୁଆଡ଼େ ଗଲେ । ସେତ ଆଉ ନାହାନ୍ତି । ଆପଣ କଣ

---

ସେଦିନ କଥା, ଆଜିକି ଅଛି ମନେ, ସେହି ଆଦ୍ୟ ଦିବସ,
ଜୀବନେ ମମ ତବ ସହିତେ ହୋଇଥିଲା ଯେଉଁ ବିରହ ରସ

ଜାଣନ୍ତ ନାହିଁ ? ସେ କାହିଁକି ଆମ ପାଖରେ ରହିବେ । ସେ ପୁଣ୍ୟାତ୍ମା, ମୁଁ ସିନା ଏଠି ଜଳପୋଡ଼ ହୋଇ ମରୁଛି, ତୋର ଆଜି କଏ ଅଛନ୍ତି ? ମୋ ଝିଅ ଜୁଆଇଁ ପରା ଏଠି ଅଛନ୍ତି,' ଆଜି ଯାହାକୁ ଫୁଲଚାଖଡ଼ି କରି ଟେକି ଦେଇଥିଲି ସେ ପରା କଷ୍ଟରେ ଅଛି, ଛଟପଟ କରୁଛି, ସମ୍ପତ୍ତି ନ ପାଇଲେ ନାହିଁ ପଛେ ବଞ୍ଚି ତାର ମଙ୍ଗଳ କରନ୍ତୁ ।

ଏ କଥା ଶୁଣି ମଝିଆଣୀଙ୍କର ସନ୍ଦେହର ଅବକାଶ ରହିଲା ନାହିଁ । ନଟିଆ ବୋଉର ପ୍ରେତାତ୍ମା ନିଶ୍ଚୟ ପଦ୍ମାକୁ ଧରିଛି । ଝିଅଟିଏ ଜନ୍ମ କରିବାର ୨।୩ ଦିନ ପରେ ନଟିଆ ବୋଉ ମରିଗଲା ଅସହ୍ୟ ଯନ୍ତ୍ରଣା ସହି, ସେକାଳର ସବୁଠାରୁ ସୁନ୍ଦରିଆ ବୋହୂ ଥିଲା ସେ, ଓଠ ଦିଓଟି ନାଲି ଟୁକୁ ଟୁକୁ । କଳା ମଚ ମଚ ବାଳ ଆଣ୍ଠୁ ପର୍ଯ୍ୟନ୍ତ ପଡ଼ୁଥାଏ । ମୁହଁଟି ଗୋଲ । ନଟିଆ ବୋଉ ସବୁବେଳେ ହସ ହସ, ବଡ଼ ସରଳ ପ୍ରକୃତିର ସେ ଥିଲା । ମାତ୍ର ବାରମ୍ବାର ପୁତ୍ର କନ୍ୟାଙ୍କର ମୃତ୍ୟୁରେ ଭାଙ୍ଗି ପଡ଼ି ଥିଲା ସେ । ଗୋଟିକ ପରେ ଗୋଟିଏ ଏହିପରି ୨।୪ଟି ପିଲା ତା ଆଗରୁ ଚାଲି ଯାଇଥିଲେ । ସେଇ ଦୁର୍ଭାଗ୍ୟରେ ତାର ସରଳ ସୌମ୍ୟ ପ୍ରକୃତିର ପରିବର୍ତ୍ତନ ହୋଇଥିଲା । ଆଶା କରିଥିଲା ସେ, ସେ ହୋଇଛି ଗର୍ଭ କଅଣ । ପିଲାଟିଏ ହବ ପରା ? ତାର କଅଁଳିଆ ମୁହଁଟିକୁ ଦେଖି ସେ ତାର ସମସ୍ତ ଦୁଃଖ ଓ ଶୋକ ଭୁଲିଯିବ । ମାତ୍ର ବିଧିର ବିଧାନ ଅନ୍ୟ ପ୍ରକାର । ଜନ୍ମର କେତେ ଘଣ୍ଟାପରେ ଛୁଆଟି ମରିଗଲା । ଛୁଆ ପରେ ପରେ ନଟିଆ ବୋଉର ସନ୍ନିପାତ ଓ

---

କାହାର ଆଶା କାହାର ଦରଶନ ପରଶନ ଅଛି ତାହାର
ଆହା ଜୀବନର ଅମୃତ ସେହି ଦୁଇହସ୍ତେ ସେହି ଅମୃତ ଚିର ବିତର

ଅଳ୍ପ କେତେ ସମୟ ଭିତରେ ମୃତ୍ୟୁ । ଏ ସବୁ କଥାରେ ମହିଆଣୀଙ୍କ ଆଖିଆଗରେ ଚଳଚ୍ଚିତ୍ର ପରି ଝଲସି ଯାଉଛି । ମନରେ ଟିକିଏ ଦୁଃଖ ହେଲା ତାଙ୍କର । କହିଲେ ଯାହାତ ହେଲା ହେଲା । ତୁ କାହିଁକ ପଦ୍ମା ପାଖକୁ ଆସିଲୁ । ହଠାତ୍ ତଥାକଥିତ ନଟିଆ ବୋଉ ଉତ୍ତର ଦେଲା ନାଇମ ଅପା ମୁଁ ଏ ଆମ୍ବଗଛ ଉପରେ ବସିଥିଲି । ଦେଖିଲି ଏ ପଦ୍ମା ଆମ ଘରକୁ ଯାଉଛି । ତାର ସାଙ୍ଗରେ ଚାଲି ଆସିଲି ଟିକିଏ ଦେଖିବାକୁ । ମୁଁ ଚାଲିଯିବି ଏଇକ୍ଷଣି । ମହିଆଁ ସାନ୍ତଙ୍କୁ କହିବ ନାହିଁ । ଏଥିଭିତରେ ଗାଁର ଗୁଣିଆ ବଶ୍ୟାଲେ ଆସି ପହଁଚ ଗଲେଣି    ହାଣି ଚରୁଗୁଣି ତାଙ୍କ ଆସିବା ଜାଣିଲେ ଦୂର ପଳା ଅବସ୍ଥାରେ ରହନ୍ତି, ବଶ୍ୟାଲେଙ୍କ ଆଗରୁ ଆଉ ୨।୩ ଥର ନଟିଆ ବୋଉକୁ ଛଡ଼ାଇଛନ୍ତି । ବେଶୀ ବେଳ ହେଲା ନାହିଁ, କଣ ମନ୍ତ୍ର ପଢ଼ି ଗୋଟାଏ ତୋଲା ଗରାରେ ପାଣି ଗରାଏ ଆଣିବାକୁ କହିଲେ ଓ ତାକୁ ଫୁଙ୍କି ଦେଇ ପଦ୍ମାକୁ ନେବାକୁ କହିଲେ । ଏତେ ଲୋକଙ୍କ ଆଗରେ ପଦ୍ମା ଗରାଟା ଧୀରେ ଧୀରେ ଆସି ସେ ଗରାଟିକୁ କାମୁଡ଼ି ଧରି ବାଡ଼ିଆଡ଼ ଆମ୍ବଗଛ ପର୍ଯ୍ୟନ୍ତ ଚାଲିଯାଇ ଦୁଲଙ୍କରି କଚଡାଏ ପଡିଗଲା । ଦାନ୍ତ ପାଟି ଜାବ ଚଢ଼ିଗଲା, ଅଧ-ଘଣ୍ଟାଏ ପର୍ଯ୍ୟନ୍ତ ଅଚେତ, ଆସ୍ତେ ଆସ୍ତେ ତାର ସଜ୍ଞା ଫେରି ଆସିଲା । ପଦ୍ମା ବଡ ଦୁର୍ବଳ ହୋଇ ପଡ଼ିଛି, ସତେ ଯେମିତି ତାକୁ ମାସେ ପକ୍ଷେ ହେଲା ଜର ହୋଇଥିଲା, କିଏ କୁଆଡ଼େ ଚାଲି ଗଲେଣି, ମଫସଲ ଗାଁ ପରଚର୍ଚ୍ଚା କରିବା ଗାଁ ଗହଳୀର ଗୋଟିଏ ମାମୁଲି ଢଙ୍ଗ । ମାତ୍ର ଗଣିଆ ବୋଉ ଖୁଡ଼ୀଟି ଏକାକୀ ଦରଭଙ୍ଗା

---

ନୂଆ ରାଇଜେ ଆସି ବସିଲି, କରିଲି ଘର, ଜହ୍ନାର ଜୁହାର
ସକଳ ମାନବେ ଅନ୍ତର ଖୋଲି ସକଳ ସାଥେ ଭଦ୍ର ବ୍ୟବହାର

ବାଉଁଶ ଜହାଟିକୁ ଆଉଜି ବସିଛି ପଦ୍ମାକୁ ଜଗି । କେତେବେଳ ପରେ ଧୀରେ ଧୀରେ ପଦ୍ମାକୁ ଉଠାଇ ଘରକୁ ଆଣିଲି ସତେ ଯେପରି ପଦ୍ମା ଫେରି ଆସିଛି ସେ ପୁରରୁ ।



(୨)

**ଶ୍ରୀ ମୃତ୍ୟୁଞ୍ଜୟ ପଣ୍ଡା**

ସେହି ଦିନ ମଙ୍ଗଳବାର । ମୁଁ ସ୍କୁଲରୁ ଘରକୁ ଫେରିଲି ବେଳକୁ ପ୍ରାୟ ସାଢେ ପାଞ୍ଚଘଣ୍ଟା ଆସ୍ଥା ପଡଗ ସାହିରେ ମୋର ବସା, ଦାଣ୍ଡିଟି ବଡ ଚୋକଡ଼ା । ଆମ୍ଭ ଘରକୁ ୧° ଘର ଛଡା କଇବଲ ମ ଝିଅର ଘର । ଉକ୍ତ ଝିଅର ନାମ ଗୁହାସ । ବୟସ ପ୍ରାୟ ୨୫ ହେବ , ଦେଖିବାକୁ ସବଳ ଓ ହୃଷ୍ଟପୃଷ୍ଟ । ବର୍ଣ୍ଣ ଈଷତ୍ ଗୋରା , ତାର ଦୁଇଟି ଛୋଟ ପୁଅ । ତାର ପତି ସୁଦୂର ବିଶାଖ- ପାଟଣା ବୋଇତ କମ୍ପାନିରେ କାମକରେ ।

ହଠାତ୍ ସାହିରେ ଚହଳ ପଡ଼ିଲା ଯେ ଗୁହାସ ଅଚେତ ଓ ତାକୁ ଭୂତ ଆସିଛି ଏବଂ ତାର ପିଲା ଦ୍ୱୟ ମା ପାଖରେ ବସି ମାଆ - ମା - ବୋଲି ରଡ଼ି କରୁଛନ୍ତି । କିଏ କହୁଛି ମରିଗଲା , କିଏ କହୁଛି ନାହିଁ । ଏହି କଥା ଶୁଣି ମୁଁ ଘରୁ ଦାଣ୍ଡକୁ ଆସିଲି । ଗୁହାସର ମାକୁ ଦେଖି ସମସ୍ତ ବିଷୟ ଅନୁସନ୍ଧାନ କଲି । ତା ଠାରୁ

---

ସେ ଯେ ପରାଣ ଟାଣେ, ତା ବିନେ ମନଟିଏ କେମିତେ ରହିବ କାହାରେ
ମୋ ପରାଣ ଛୁଏଁ ସେ, ମାୟା ବସାଇ ଦିଏ ପ୍ରାଣେ ଧାଏଁ ମନ ସେହି-
ଠାରେ

ବୁଝିଲି ଯେ ତାହା କିଛି ନୂଆ କଥା ନୁହେଁ । ଏପରି କେତେଥର ତାକୁ ଭୂତ ଆସିଲାଣି । ତାହା ଭୂତ ନୁହେଁ , ମାତ୍ର ବୀର ପେଷଣ ବିଦ୍ୟା । କୌଣସି ଗୁଣିଆ ତା ଝିଅକୁ ଏପରି ୪ କି ୫ ବର୍ଷ ହେଲା ହରବର କରୁଛନ୍ତି । ମୁଁ କୌତୂହଳ ବଶତଃ ନିଜେ ଯାଇ ରାହାସକୁ ଦେଖିଲି , ଯେହେତୁ ଭୂତ , ପ୍ରେତରେ ମୋର ଆଦୌ ବିଶ୍ୱାସ ନଥାଏ କହିଲେ ଚଳିବ ! ଏସବୁ ସମସ୍ତ ମୂର୍ଚ୍ଛା ଓ ଉନ୍ମାଦନା ସ୍ତ୍ରୀ ମାନଙ୍କ ଦେହର ଗୋଟିଏ ବିକାର ବୋଲି ମୋର ଧାରଣା ଥାଏ । ମୁଁ ଓ ମୋର ସଙ୍ଗୀମାନଙ୍କ ସହିତ ଯାଇ ଦେଖିଲି ବେଳକୁ ରାହାସ ମଠ ମଠ ଗୁହାଁଲାଣି, ହଠାତ୍ ସେ ଉଠିପଡ଼ି କହିଲା" ଏ ଦେଖ ଆସୁଛି, ଦେଖ ! ଦେଖ ! ବାହାରି ଯାଉଛି । ଝାମ୍ପୁଆ ମୁଣ୍ଡିଟା ଘଡ଼ି ଉପରକୁ ଉଠୁଛି ! ମୋର ପିଲାମାନେ କାହାନ୍ତି ?" ତାପରେ ତାର ମା ଇତ୍ୟାଦି ତାର ମୁଖ ଧୌତ କରି ଦେଲେ । ସେତେବେଳକୁ ସୂର୍ଯ୍ୟ ଅସ୍ତମିତ ପ୍ରାୟ । ସେ ସାହି ଝିଅମାନଙ୍କ ସହିତ ପାଣି ଆଣି-ବାକୁ ନଦୀକୁ ଗଲା । ଘରକୁ ଫେରି ଦେଖିଲା ନାକରେ ଦଣ୍ଡି ନାହିଁ କି ଗୋଡ଼ରେ ବଳା ନାହିଁ । ଏ କଥା ସେ ଚିତ୍କାର କରି ତାର ମା ଓ ସାହି ଝିଅଙ୍କୁ କହିଲା । ତେଣୁ ସେମାନେ ନଦୀ ଓ ଚତୁର୍ଦ୍ଦିଗ ଖୋଜି ବୁଲିଲେ କିନ୍ତୁ ତାହା ମିଳିଲା ନାହିଁ । ପରେ ଜାଣି ପାରିଲେ ଅନ୍ୟ ଥର ମାନଙ୍କ ପରି ଏହା ପେଷିତ ବୀର ନେଇ ଯାଇଥିବ । ଗାଳି କଳି କରିବାକୁ ଝିଅକୁ ମନା କରିଦେଲେ କାରଣ 'ବୀର'କୁ ଯଦି ଗାଳି କଳି କରାହୁଏ ତେବେ ସେ ନେଇଥିବା ଜିନିଷ ଶୀଘ୍ର ଫେରାଏ ନାହିଁ । କଅଁଳ କଥାରେ ଗୁହାରି ମିନତି କଲେ ତାହା ସେ

---

ଆସ ଗୋ ଅବତରି. ପ୍ରାଣ ସଖା କିଏ ଅଛ ମୋହରି
ଆଜ ଦୁଇ ଦିନ ଦୁନିଆ ଦେଖି ନିଏ ପ୍ରିୟ ତୁମ ସାଥେ ଭଲ କରି

ଫେରାଇ ଦିଏ ବୋଲି ତାର ମା କହିଲା । ଏକଥା ଗୁଡ଼ିକ ଦେଖି ମୁଁ ପ୍ରକୃତରେ ଆଶ୍ଚର୍ଯ୍ୟାନ୍ୱିତ ହେଲି । ରାବଣ ନାକରୁ ଦଣ୍ଡିଟି ଖସି ପଡ଼ିଯିବା ଅସମ୍ଭବ ନୁହେଁ, ମାତ୍ର ଦୁଇ ଗୋଡ଼ ଯାକର ବଳା ଖସି ପଡ଼ିଯିବା ବଡ଼ ଚମତ୍କାର ! ଏପରି କଥାବାର୍ତ୍ତା ଚାଲିଥିଲା ବେଳେ ରହିଦାସ ଧାଇଁ ଆସି କହିଲା ଯେ "ସେ ରନ୍ଧାଘରକୁ ଯାଇ ଦେଖିଲା ବେଳକୁ ଭାତ ରନ୍ଧା ହୋଇଯାଇ ଥୁଆ ଯାଇଛି ଏବଂ ଡାଲିପାଣି ଫୁଟୁଛି । ରନ୍ଧା ଘରଟି ଯାକ ଗୁଳଲ ସଜ୍ଜ ହୋଇ ପଡ଼ିଛି । ଏହା ଶୁଣି ଆମ୍ଭେ ସମସ୍ତେ ଯାଇ ଦେଖିଲୁ ଯେ କଥା ସବୁ ସତ । ରହିଦାସ ତତ୍‌କ୍ଷଣାତ୍ ତାର ପିଲା ଦୁଇଟିକୁ ଧରି କାନ୍ଦି କାନ୍ଦି ଘରେ ତାଲା ଦେଇ ତାର ମା ଘରକୁ ଚାଲି ଆସିଲା । ତାର ପତି ନିକଟକୁ ମୋ ଦ୍ୱାରା "ହଠାତ୍ ଆସିବାକୁ" ଟେଲିଗ୍ରାମ ବାର୍ତ୍ତା ଦେଲା । ତା ପରଦିନ ଦିନ ବାର ଘଣ୍ଟା ସମୟରେ ତାର ପତି ଆସି ପହଞ୍ଚିଲା । ସେତେବେଳକୁ ରହିଦାସ ଆସି ଆମ ଘରର ଠିକ୍ ସମ୍ମୁଖରେ ଥିବା ଘରଟିରେ ରହିଥାଏ । ସେହିଦିନ ତାର ଶଶୁରର ଶ୍ରାଦ୍ଧ ଦିବସ । ସେ ପ୍ରାତଃକାଳୁ ଉଠି ତା ନିଜ ଘରକୁ ଯାଇ ସବୁ ନିର୍ମଳ କଲା । ରନ୍ଧାଘରର ହାଣ୍ଡି ଇତ୍ୟାଦି ବାହାର କରି ଫୋପାଡ଼ି ଦେଲା । ଘର ଧୂଆ ଧୋଇ କଲାପରେ ପିତଳ ବାସନରେ ରନ୍ଧା ଆରମ୍ଭ କଲା ସେ ଚୁଲି ପାଖରେ ରଖିଥିବା ସାରୁ, ଆଳୁ, ପ୍ରଭୃତି ହଠାତ୍ କାହିଁ ଉଭେଇ ଗଲା । ଏକଥା ମଧ୍ୟ ସେ ଆସି ଆମ୍ଭଙ୍କୁ କହିଲା । ମୁଁ ଯାଇ ଦେଖିଲି ବେଳକୁ ସାରୁ ମୁଣ୍ଡା ଗୁଡ଼ିକ ସୁନ୍ଦର ଓ କଣ୍ଟାଳରେ ଶଜିତ ହୋଇ ଉପରୁ ତଳକୁ ଦୋଳାୟିତ ପଡ଼ିଲା । ଏଥିରେ ମୁଁ ଅବାକ୍

---

ଏକ ଏକ ବ୍ୟଥା ଜାଗେ ପରାଣେ, ଏକ ଏକ ପ୍ରିୟ ଆସେ ପରାଣେ
ମୁଁ ଭାବି ବସେଁ ଥିଆନେ, ଅତି ପ୍ରିୟ, ଅତିପ୍ରିୟ ଯେ ସେମାନେ ।

ହୋଇ ଠିଆ ରହିଲା । ଏତେ ଦିନ ଧରି ଭୂତ ସହିତ କାଳ କାଳ
କାଟି ଆସୁଥିବା ରାମଦାସକୁ ଆମେ ପ୍ରଶଂସା ନକରି ରହି ପାରିଲୁ
ନାହିଁ । ରାମଦାସ କହିଲା ଯେ ଦିପହରରେ କିମ୍ବା ସନ୍ଧ୍ୟାରେ ତ ସହିତ
ଗୋଟିଏ ଝାମ୍ପୁରା ମୁଣ୍ଡିଆ ବାଳକ ଓ ମେଣ୍ଢା ପକାଇ ବା ଗୋଟିଏ
ବାଳିକା ପାଖେ ପାଖେ ଗଲାପରି ସେ ଅନୁଭବ କରେ । ମାତ୍ର ଉପର
ଛାର ଥିବା ଜିନିଷ ପତ୍ର କେହି ନେଇଯିବା ଉପରେ ସେ ଘରଛାଡ଼ି
ଯାଏ ନାହିଁ ! ସେତେବେଳକୁ ତାର ପତ୍ନି ଘରେ ପ୍ରବେଶ କଲା ।
ଏ ସମସ୍ତ ଘଟଣା ସେ ଶୁଣି ହଠାତ୍ ଗୁଣିଆ ଡାକିବାକୁ ପଠାଇଲା ।
ତା ପରଦିନ ଦୁଇଜଣ ଗୁଣିଆ ଆସି ସେଠାରେ ପ୍ରବେଶ କଲେ ।
କୋଠି ଇତ୍ୟାଦି କାଟି, ମନ୍ଦାର ଫୁଲ, ଛେଳି ଟକୁଳାଣିଠା, ମୂଆଁ
ଇତ୍ୟାଦି ନାନା ପ୍ରକାର ଜିନିଷ ସେଠି ବାଢ଼ିଲେ । ରାମଦାସକୁ
ସେଠାକୁ ଡାକିଲେ । ସେ ଆସିଲା । ଆମ୍ଭେମାନେ ମଧ୍ୟ ସେଠାରେ
ଥାଇ ଏହି ସବୁ ଦେଖୁଥିଲୁ ଏହି ସମୟରେ ଉକ୍ତ ଗୁଣିଆର ହାତରେ
ଥିବା କଙ୍କଣଟି ହଠାତ୍ ଅଦୃଶ୍ୟ ହୋଇଗଲା । ଗୁଣିଆ ଅନେକ
ଚେଷ୍ଟା କଲା କିନ୍ତୁ ତାହା ଫେରି ପାଇଲା ନାହିଁ । ମାତ୍ର ଗୁଣିଆ
ସେମାନଙ୍କୁ ଧୈର୍ଯ୍ୟ ଦେଇ ତା ପରଦିନ ଏହି ବିଦ୍ୟା କରିବା ପାଇଁ
ସ୍ଥିର କଲା । କିନ୍ତୁ ସକାଳୁ ଉଠି ଦେଖିଲା ବେଳେ ଗୁଣିଆ ଦୁହେଁ
ସେଠାରୁ ଅଦୃଶ୍ୟ । ରାମଦାସର ପତ୍ନି ତାର ପିଲାମାନଙ୍କ ସହିତ
ବିଶାଖାପାଟଣା ବାହାରି ଯିବାକୁ ସ୍ଥିର କଲା । ସେହିଦିନ ରାତ୍ର ରାମଦାସ
ଶୋଇଥିବା ବେଳେ ତାକୁ ବିଛଣାରୁ ଉଠାଇ ତା ହାତରେ ଦଣ୍ଡିଟି

---

ଆସିଥିଲା ଗଭାଫୁଲ ପିନ୍ଧି, ଉଁଚା ହୋଇଥିଲା ପାଣେ, ପଚ୍ଛିଲି ନାହିଁ
ଆଜ ଏବେ ଭାଳୁଛ ମୋତେ, କାନ୍ଦୁଛ ଏତେ, ବେଳତ ଗଲା ଚାଲି,
ଆଉ କିଛି ନାହିଁ ।

ଦେଲି ଓ ବଲା ଦୁଇଟି ଗୋଡ଼ରେ ଯଥାତଥା ରହିଛି ଏହା ସେ ଦେଖିଲି । ସେତେବେଳେ ନିଜ ପତି ଓ ସାହି ଲୋକଙ୍କୁ ଉଠାଇ ଏହା ଦେଖାଇଲି । ସେମାନେ ତା ପରଦିନ ସକାଳ ବସତରେ ଆସି ଗ୍ଛଡ଼ି ବଣାଖାପାଠଣା ଗ୍ଲଲଗଲେ ।

ଏହା ପରେ ପରେ ଅନ୍ୟ ଗୋଟିଏ ଅଦ୍ଭୁତ ବିଷୟ ଦେଖିବାକୁ ମିଳିଲା, ଲୋକଟି ସୋରଣ୍ଡାର । ସେ ସାଗଫ ବାସ କମ୍ପାନିରେ କ୍ଲିନର କାମ କରୁଥାଏ । ତାର ନବ ବିବାହିତା ସ୍ତ୍ରୀକୁ କେହି ଖାଗ ଚେଷ୍ଟା କରୁଥିବା ଯୋଗୁଁ ସେ ତାକୁ ଧରି ଆସି ଆମ ନିକଟସ୍ଥ ନଳଦଣ୍ଡା ଗ୍ରାମରେ ରହିଲା । ତେବେ ଧିଷା ଖାଗ ତାକୁ ଛାଡ଼ି ନାହିଁ । ପିନ୍ଧା ବସନ , ରନ୍ଧାଭାତ , ସମୟେ ସମୟେ ନେଇ ଗ୍ଲଲଯାଏ, ସେ ରନ୍ଧିବା ଘର ଗ୍ଲଳରେ ଶୂନ୍ୟରେ ଅଗ୍ନି ଜାତ ହୋଇ ଳଭିଯାଏ । ଏ କଥା ଦେଖି ଗ୍ରାମଲୋକେ ସବୁ ଆଶ୍ଚର୍ଯ୍ୟ ହେଲେ । କିନ୍ତୁ ଉପୂତରେ ଶରଣ ପଶିବା ଲୋକକୁ ଗ୍ରାମରୁ ଅନ୍ତର କରିବାକୁ ଇଚ୍ଛା କଲେ ନାହିଁ, ଯେହେତୁ ସେ ସ୍ତ୍ରୀ ଦଶମାସ ଗର୍ଭବତୀ ହୋଇଥିଲି । ଅଳ୍ପଦିନରେ ସେ ଗୋଟିଏ ସୁନ୍ଦର ପୁଅଟିଏ ପ୍ରସବ କଲା । ପଞ୍ଚୁଆଣ୍ଠି ଦିନ ସେ ନିଦରୁ ଉଠି ଦେଖିଲା ପିଲାଟି ଶେଯରେ ନାହିଁ । ସ୍ତ୍ରୀ ପିଲା ନିକଟରେ ନ ଦେଖି ଚିତ୍କାର କରିବାକୁ ଲାଗିଲା । ଗ୍ରାମଲୋକ ଉଠି ଚତୁର୍ଦ୍ଦିଗ ଖୋଜି ବୁଲିଲେ । କିନ୍ତୁ ପିଲା ମିଳିଲା ନାହିଁ । କେ କହିଲା ସାପ ଗିଳି ଦେଇ ଥାଇପାରେ । ନଭୁବା ବୋଡ଼ା ନେଇ

---

ଯାଅ ଯାଅ ସଖୀ; ଜୀବନ ପୁରେ ମୋର ଆସିଥିଲ ସଭିର କେତେ ଆଶା ବନ୍ଧି
ମୁହିଁ ତୁମକୁ ବୁକୁରେ ରଖିବି ଚିରକାଳ ଭାବିଥିଲି ସତେ-ଏବେ ହେଉଛି ଦନ୍ଧି ।

ଯାଇ ପାରଥାଏ । ଘଡ଼ି ଇତ୍ୟାଦି ସମସ୍ତ ଖୋଜିଲେ । ବର୍ଷା ଦିନଟା ହେତୁ ମେଘ ଅଳ୍ପ ଅଳ୍ପ ବରଷୁ ଥାଏ । ଲୋକମାନେ ପିଲାକୁ ନପାଇ ନିଜ ଘରମାନଙ୍କୁ ଫେରିଲେ ।

କିନ୍ତୁ ଗୋଟିଏ କଥା ବଡ଼ ଆଶ୍ଚର୍ଯ୍ୟ ଯେ ଦୁଆର ବନ୍ଦଥିବା ଘର ଭିତରରୁ ଶାଶୁ, ନଣନ୍ଦ ଓ ସ୍ୱାମୀ ଓ ସମସ୍ତଙ୍କ ମଧ୍ୟରୁ ପିଲାଟି ଉଭାଇ ଯିବା ବଡ଼ କୌତୂହଳପ୍ରଦ । ଘରର ସମସ୍ତେ କାନ୍ଦୁଥାନ୍ତି । ସେମାନେ ବିଚାର କଲେ ଯେ କାଳେ କେହି ବାଘ ନେଇଥାଇ ପାରେ । ପରଦିନ ସକାଳୁ ଏ କଥା ଆସ୍କାରେ ବ୍ୟାପିଗଲା । କେତେ କେତେ ଶିକ୍ଷକ, ଭଦ୍ରଲୋକ ସବୁ ସେଠାକୁ ଏହି ବିଷୟ ଅନୁସନ୍ଧାନ କରିବାକୁ ଗଲେ । ସେଥି ମଧ୍ୟରୁ ମୁଁ ଜଣେ । ଆମେ ମଧ୍ୟ ଏ ଘଟଣା ସମ୍ପର୍କରେ କିଛି ସ୍ଥିର କରି ପାରିଲୁ ନାହିଁ । ମାତାର ବିକଳ କ୍ରନ୍ଦନ ଓ କୁଟୁମ୍ବର ହା-ହା-କାର ନାଦରେ ଆମର ହୃଦୟ ଦୁଃଖରେ ଜର୍ଜରିତ ହୋଇଗଲା । ପ୍ରାୟ ୭-୮ ଦିନ ପରେ ଶୁଣି ପାରିଲୁ ଯେ, ପିଲାର 'ବାରବର' ଦିନ ପିଲାଟି କଜ୍ଜଳ, ତେଲ ଲଗା ହୋଇ ତାର ମା କୋଳରେ ଆସି ଶୋଇଛି । ଏ କଥା କମ୍ ଆଶ୍ଚର୍ଯ୍ୟ ନୁହେଁ । ଏଥିରେ ସମସ୍ତ ଗ୍ରାମବାସୀ ଚାଟକା । ଆମ୍ଭେ ମଧ୍ୟ ଯାଇ ଦେଖିଲୁ ଯେ ପିଲାଟି ବେଶ ସୁସ୍ଥ ଅଛି ଏବଂ ତା ମାଆର କ୍ଷୀର ଖାଉଛି । ପିଲାଟିକୁ ବର୍ତ୍ତମାନ ପ୍ରାୟ ୫ ବର୍ଷ ହେବ । ସେମାନେ ସେଠାରୁ ଫେରି ଆସ୍କାରେ ଘର ନେଇ ରହିଛନ୍ତି ।

(ଭଞ୍ଜ ନଗର—ଗଞ୍ଜାମ ୧୯- -୧୯୫୮)

---

ତୁମେ ଥିଲ କାହିଁ, ମୁଁ ଥିଲି କାହିଁ, ଭେଟ ହେଲା ଯେବେ ଦିନ ଦିନ ରହି
ଆସିଲ ବୁଝି ମୋ ପାଶେ, ମୁଁ ବି ଆସିଲି ରହୁ ଆକର୍ଷଣେ ଯେ-ସେହି ।

(୩)

## ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ

ପିଲାଦିନେ ମୁଁ ଉଡ଼ିବାର ସ୍ୱପ୍ନ ଅନେକ ଦେଖିଛି । ଥରେ ଦେଖିଛି ମୁଁ ଉଡ଼ି ଉଡ଼ି ଚୀନଦେଶ ଉପରେ ଯାଉଛି - ଆଉ ଶତ୍ରୁ-ମାନେ ମୋତେ ବନ୍ଧୁକ ମାରିବା ପାଇଁ ଚେଷ୍ଟା କରୁଛନ୍ତି -

ଆହୁରି ଅନେକଥର ସ୍ୱପ୍ନ ଦେଖିଛି-କୋଠାଘର ଉପର ଛାତ ଦେଇ ଉଡ଼ି ଉଡ଼ି ଯାଉଛି । ଅତି ଉଚ୍ଚ କୋଠାଘର ପଡ଼ିଲା । ମୁଁ ଅଧିକ ପରିଶ୍ରମ କରି ଉପରକୁ ଉଠିଛି ଉଡ଼ି ଉଡ଼ି ।

ପିଲାଦିନେ ପାରି ଉଡ଼ାରେ ମୋର ବଡ଼ ଆନନ୍ଦ-ଅନେକ ସମୟରେ ଉଡ଼ିଲା ସ୍ୱପ୍ନ ଦେଖିଛି ପାରିର ରାଜ୍ୟରେ, ପାରିର ରାଜ୍ୟରେ ମୁଁ ମଧ୍ୟ ଉଡ଼ୁଛି ବଡ଼ ଆନନ୍ଦ ହୁଏ । ଅନେକ-ସମୟରେ ଦେଖିଛି ଯେ ପୋଲିସ ମିଲିଟେରି ସଙ୍ଗରେ ଗୋଳମାଳ ହେଲା - ମୋତେ ସେମାନେ ଗୁଳିକରି ତଳକୁ ପକାଇବା ପାଇଁ ଲକ୍ଷ୍ୟ କରୁଛନ୍ତି - ମୁଁ ଉଡ଼ିଉଡ଼ି ଉପରକୁ ଉଠିଉଠି ଚାଲି ଯାଉଛି ଏବଂ ଗୁଳିର ଚେଷ୍ଟାରୁ ଆପଣାକୁ ରକ୍ଷା କରୁଛି । ଏହି ଉଡ଼ିବା ସ୍ୱପ୍ନ ଅନେକ ଦେଖିଛି - ଅନେକ ସମୟରେ ଉଚ୍ଚ ପାହାଡ଼ ଉପରକୁ ଉଡ଼ିବା କଠିନ ମନେକରିଛି-କିନ୍ତୁ ପ୍ରାଣପଣେ ଚେଷ୍ଟା

---

ବାନ୍ଧିଲୁ ଘର ସାଙ୍ଗ ହୋଇ, ଆଜ ନାହିଁ ପର, ତୁମେ ମୁଁ ସପନର
ସେହି ସପନରେ ହୋଇ ବିଭୋର ଜଗି ପାରୁ ଯେହ୍ନେ ଜୀବନ ଚିର
ଆମର ।

କବି ତା ଉପରକୁ ଉଠୁଛି ଏବଂ ସେଠୁ ଉଡ଼ିଉଡ଼ି ଯାଉଛି । ଏହି ଉଡ଼ିବାର ଗୋଟିଏ ଭୀତି, ଗୋଟିଏ ଆନନ୍ଦ, ଗୋଟିଏ ଜୟ ପରାଜୟର ଆନ୍ଦୋଳନ ବରାବର ରହିଛି ।

ଏହି ଜିନିଷଟି କଣ ? ସ୍ୱପ୍ନର ଦର୍ଶନ ଗୁଡ଼ିକ କଣ ? ପୁଣି ସ୍ଥିର ସ୍ୱପ୍ନ ଯାକୁ କି ଆଜି ପର୍ଯ୍ୟନ୍ତ ଭୁଲି ପାରିନାହିଁ ମନରେ ଗୁନ୍ଥା ହୋଇଛି ସେ ବା କଣ ? ଏହାର ଅନେକ ବର୍ଣ୍ଣନା ପଢ଼ିଛି କିନ୍ତୁ ତୃପ୍ତି ଶେଷ ତୃପ୍ତି ପାଇନାହିଁ । ସେହି ଯେ ସ୍ୱପ୍ନ ରାଜ୍ୟର ସେହି ଇଂରାଜରମଣୀ ଯେ ମୋତେ ଆଜି ଖୋଜି ବ୍ରହ୍ମାଣ୍ଡ ବୁଲି ଶେଷରେ ଆସି ମୋ କୋଳ ଶେଯ ନିଦ୍ରା ଗଲା-ତାହା କି ଏକାବେଳକେ ମିଥ୍ୟା ? ଜୀବନ ଯଦି ମିଥ୍ୟା ହୁଏ, ତାହାହେଲେ ସେ ମଧ୍ୟ ମିଥ୍ୟା ହୋଇ ପାରେ । କିନ୍ତୁ ଜୀବନକୁ ସତ୍ୟ ବୋଲି ଧରିଲେ, ଏହି ସ୍ଥିର ସ୍ୱପ୍ନକୁ ମିଥ୍ୟା ବୋଲି ଭାବିବ କାହିଁକି ?



---

ନନ୍ଦନମ୍ମ ମନ୍ଦାକିନୀ ହେଲା ପଛେ [illegible]ହ୍ନା-ହେଲାତ ହେଲା
ଚନ୍ଦ୍ରିରେ ପରସ୍ପର ସହାୟ ହୋଇ [illegible] ନ ବୁଡ଼ିବ ଭେଳା

(୪)

### ଶ୍ରୀ ରାଜକିଶୋର ସାହୁ

ମୁଁ କଟକରେ ଡନ୍ କେବିନ୍‌ରୁ ଦରଘାବଜାରକୁ ରାତିରେ ଯିବା ଆସିବା କରେ—ବାଟରେ ଚନ୍ଦ୍ରବାବୁଙ୍କ ଘର ପାଖରେ ଟିକିଏ ଛୁପ୍ସା ଛୁପ୍ସା ଥିବାରୁ ଡରମାଡ଼େ ତଥାପି ମୁଁ ଏତେ ଡରୁଆ ଲୋକ ନୁହେଁ- କେତେଥର କେତେ କଥା ଦେଖିଛି—ଥରେ କିନ୍ତୁ ଜେଲଖାନା ପାଚେରୀରେ ଗୋଟିଏ କୁକୁରକୁ ଦେଖିଲି, ସେ ସେଠୁ ତଳକୁ ଡ଼ିଆଁ ମାରି ଦେଲା ଏବଂ ମୋ ଗୋଡ଼ ପାଖକୁ ଆସିଲା ବେଳକୁ ମୁଁ ତାକୁ ପାଟିକରି ହଟାଇ ଦେଲି—ଜେଲଖାନା ପାଚେରୀ ଉପରେ କୁକୁର ଆସିଲା କେଉଁଠୁ, ଏବଂ ସେ ଚଢ଼ିଲା କିପରି ଏହାହିଁ ମୋତେ ଆଶ୍ଚର୍ଯ୍ୟ ଲାଗୁଥାଏ-ଚୌଧୁରୀବଜାର ଡନ୍ କ୍ୟାବି- ନ୍‌ରୁ ଦର୍ଘାବଜାର ପର୍ଯ୍ୟନ୍ତ ଆସିବା ପଥରେ ଅନେକଥର ରାତିରେ ଏହିପରି ଜନ୍ତୁ ନା କନ୍ତୁ ଦେଖିଛି-କିନ୍ତୁ ମୁଁ ଠିକ୍ କରି କହିପାରିବି ନାହିଁ ତା ମୋର ମନର ଭ୍ରମ ଅବା ତାହା ସତ୍ୟ।

---

(୫)

### ଡା: ନବୀନକୁମାର ସାହୁ

୧୯୫୭ ସାଲର ମେ ମାସ, ପ୍ରାଚୀ ନଦୀ ଉପତ୍ୟକାରେ ଥିବା ପ୍ରାଚୀନ ଅବଶେଷ ଅନୁସନ୍ଧାନ କରିବା ନିମନ୍ତେ ମୁଁ ଉତ୍କଳ

---

ତୋଟରେ ମନାକରୁଛି ମୁହିଁ, ଦିନ ରାତି ରହି, ପାଞ୍ଚୁଟି ମଙ୍ଗଳ ତୋର ।
ତୁ ଯେ ମମ ଜୀବନର ଜୀବନ, ମଧୁମୟ ବ୍ୟବହାର କରୁ ଉପକାର

ବିଶ୍ୱବିଦ୍ୟାଳୟ ତରଫରୁ ପ୍ରାଚୀ ମୁହାଣ ପର୍ଯ୍ୟନ୍ତ ଯାଇଥିଲି । ମୋ ସଙ୍ଗରେ ତୁଳସୀପୁର ନିବାସୀ ନାରାୟଣ ତ୍ରିପାଠୀ ଓ କାକଟପୁର ନିବାସୀ ଶ୍ରୀଯୁକ୍ତ ଗୋବିନ୍ଦ ଦୃଷ୍ଟି (ବର୍ତ୍ତମାନ ସେଠା ହାଇସ୍କୁଲର ପ୍ରଧାନ ଶିକ୍ଷକ) ଓ ରାଜକିଶୋର ମହାନ୍ତି ଯାଇଥିଲେ । ପ୍ରାଚୀ ମୁହାଣରେ ହିନ୍ଦୁଙ୍କ ଉପାସ୍ୟ ଦେବତା ଗୋମୁଖ କେଶବ ଓ ମୁସଲମାନଙ୍କ ଉପାସ୍ୟ ଜାହାନିଆ ପିରଙ୍କ ଆସ୍ଥାନ, ଉଭୟଙ୍କ ସମ୍ପର୍କରେ ତଥ୍ୟ ସଂଗ୍ରହକରି ସମୁଦ୍ର କୂଳରୁ ଆମେ ପାଟଳଦା ଗାଁକୁ ଫେରିଲୁ ଏତେବେଳକୁ ସନ୍ଧ୍ୟା ହୋଇ ଆସିଥାଏ, ପାଟଳଦାରେ ଶ୍ରେଷ୍ଠେଇବାସ କରି ଗୋଟିଏ ବଳଦଗାଡ଼ିରେ ରାତି ପ୍ରାୟ ନ'ଟା ବେଳେ ଆମେ ସମସ୍ତେ କାକଟପୁର ଅଭିମୁଖେ ବାହାରିଲୁ । ସେ ଦିନ ବୁଦ୍ଧପୂର୍ଣ୍ଣିମା । ଆକାଶ ନିର୍ମଳ ହେଣ୍ଡୁ ଜହ୍ନ ଆଲୁଅରେ ଚାରିଆଡ଼ ଅତି ସୁନ୍ଦର ଦେଖା ଯାଉଥାଏ । ଦିନର ପରିଶ୍ରମରେ ଥକାପଡ଼ି ଗୋବିନ୍ଦ ବାବୁ ଓ ରାଜକିଶୋର ବାବୁ ଅନ୍ତରଙ୍ଗ ଯାଇ ହେଉ ନ ହେଉଣୁ ଶୋଇଗଲେ । ମୁଁ ଓ ନାରାୟଣ ତ୍ରିପାଠୀ କିନ୍ତୁ ନାନା ଆଲୋଚନାରେ ବ୍ୟସ୍ତ ରହି ଜାଗ୍ରତ । କାକଟପୁର ପହଞ୍ଚିବାକୁ ଦୁଇମାଇଲ ବାଟ ଥାଏ ନ ଥାଏ । ସେଠାର ପ୍ରସିଦ୍ଧ ଦେବ ସୋମେଶ୍ୱରଙ୍କ ଦେଉଳର ଆଖପାଖ କେଉଁଠି, ରାତି ୧୨ଟା ହୋଇ ଯାଇଥାଏ । ଏ ଯାଏଁ ସଗଡ଼ିଆଟି ନୀରବ ଭାବେ ଗାଡ଼ି ଚଳାଇ ନେଉଥାଏ । ହଠାତ୍ ସେ ଚିତ୍କାର କରି ଉଠିଲା । ବାପରେ କିଏ ଗୋଟେ ଠିଆ ହୋଇଛି" । ସଗଡ଼ିଆର ଚିତ୍କାର ସଙ୍ଗେ ସଙ୍ଗେ ବଳଦମାନେ କିଏ ଜଣେ ବାଟ ଆଗୁଳିଲା ଭଳି ଠିଆ ହୋଇଗଲେ । ସଗଡ଼ିଆ ଯାହାକୁ ଦେଖି

---

ଆଶା କେତେ ବଦଳିଲା, ଭାବ କେତେ ନାଚିଲା
ଯୌବନରେ ମିଳିତ ହୋଇ ଦେଖିଲା ନବୀନା-କର ଏବେ ଚତୁର ଲୀଳା-

ଚଲ୍ଲାର କଲ ସେଇଟା ଗୋଟିଏ ଶରୀର କାପୂ ମୂର୍ତ୍ତି । ତାକୁ ମୁଁ କିଛିକାଳ ପୂର୍ବରୁ ନିରୀକ୍ଷଣ କରି ଆସୁଥାଏଁ । ପ୍ରାୟ ପଚିଶ ଗଜ ଦୂରରେ ସେ ପ୍ରଥମେ ମୋତେ ଦେଖା ଦେଲା । ଜହ୍ନର ଫୋପା ଆଲୁଅରେ ଏହି ମୂର୍ତ୍ତିଟି ପ୍ରାୟ ସ୍ପଷ୍ଟ ଦେଖାଯାଉଥାଏ । ଉଚ୍ଚତା ଅନ୍ୟୂନ ଫୁଟ ହେବ । ଗୋଟିଏ ବଳିଷ୍ଠ ବପୁର ମଣିଷ ଆକୃତିରେ କାଳିଆ ଭୂତର ମୂର୍ତ୍ତିଟିଏ ଭଳି ତାହା ଦେଖା ଯାଉଥାଏ । ମୁଣ୍ଡରେ ଗୋଟିଏ କନା ବନ୍ଧା ହେଲାଭଳି ଆଲୁରୁ ବାଲୁର୍ ଜଣା ଯାଉଥାଏ । ରାସ୍ତାର ଠିକ୍ କଡ଼କୁ ଆମ ଆଡ଼କୁ ମୁହଁ କରି ସିଧା ଭାବେ ଠିଆ ହୋଇଥାଏ । ଜମାରୁ ହଲ୍‌ଚଲ୍ ହେଉ ନ ଥାଏ, ଗାଡ଼ିଟି ଯାଇ ତା ପାଖରେ ଅଟକ ରହିଲା । ଶଗଡ଼ିଆର ଠିକ୍ ପଛକୁ ମୁଁ ବସିଥିଲି, ବସ୍ତୁତଃ ମୋ ଜାଗାଟା ଶଗଡ଼ିଆର, ଠିକ୍ ପଛକୁ ଲାଗି ଲାଗି ନ, ସ୍ୱପୂଣ ବିପରୀତ । ସେ ଶଗଡ଼ିଆର ଚକାର, ଗାଡ଼ିର ସ୍ଥିରତା ପରେ, ଯାଇ ଅବସ୍ଥା ବୁଝିଲେ । ମୁଁ କିଛି ପୂର୍ବରୁ ମୂର୍ତ୍ତିଟିକୁ ନଜର କରିଥିଲେ ମଧ୍ୟ ତାହା ଏଭଳି କିଛି ହେବ ବୋଲି ଅବଧାରଣା କରିପାରୁ ନ ଥାଏ, ଶଗଡ଼ିଆର ବାପଲେ ଉତ୍ତରେ ମୁଁ ଆଗନ୍ତୁକର ପ୍ରକୃତ ସ୍ୱରୂପ ବୁଝିଲି, ଶଗଡ଼ିଆ ତ ଗୋଟିପଣେ ଥରୁଥାଏ, ମୂର୍ତ୍ତିଟିଏ ସେଇ ଗୋଟିଏ ସ୍ଥାନରେ ଅଚଳ ଅଟଳ ଭାବେ ରହିଥାଏ । ଶଗଡ଼ିଆ ଆଦୁର ପାଖକୁ ଲାଗି ଯାଇ ତାକୁ ଦମ୍ଭ ଧରିବାକୁ କହିଲି ଏବଂ ଆମେ ଅନେକ ଲୋକ ଥିବା ହେତୁ ଭୟର କାରଣ ନାହିଁ ବୋଲି କହୁଥାଏ । ଇମିତିରେ ପ୍ରାୟ ୫ ମିନଟ୍ ଗଲା, ଏଇ ପାଞ୍ଚ ମିନିଟ ସାରା ମୂର୍ତ୍ତିଟି ନିଶ୍ଚଳ ଗମ୍ଭୀର ଭାବେ ଆମଠାରୁ ମାତ୍ର

---

ବଂଶ ବରଷର ଯୌବନ, ମାସ୍ୱାଦନ କାଯ୍ୟା ଧରି ସ୍ୱାଦ ସମାନ
ସେହିତ ନେବ ଭୁଲାଇ ସକଳ ବାଟ, ଭୁଲାଇବ ସକଳ ଦୁଃଖମାନ

୮୦ ହାତ ଦୂରରେ ଠିଆ ହୋଇଥାଏ । ଶେଷରେ ଶଗଡଆ ବଳଦ ଉପରେ ପାହାର ଦେଇ ଗାଡକୁ ଆଗେଇ ନେଲା, ଆମ ଗାଡ଼ ତାକୁ ଠିକ୍ ଡେଇଁ ଗଲାବାପରେ ମୁଁ ଫେର ଦେଖିଲା ବେଳକୁ ମୂର୍ତ୍ତିଟି ଶୂନ୍ୟରେ ମିଳେଇ ଯାଇଛି ।

ଏହି ମୂର୍ତ୍ତିଟିକୁ ଆମେ ତିନଜଣ ଏକାଭଳ ଦେଖିଛୁ । ହଳଆ ଯାହାର ନାଁଟି ମନେନାହିଁ କନ୍ତୁ ଗାଁଟି ପାଟଳଦା, ନାରାୟଣ ତ୍ରିପାଠୀ ଓ ମୁଁ, ଦେଖିବା ପୂର୍ବ କାଳରେ ଆମେ ଭୂତ ପ୍ରେତ ନେଇ କୌଣସି ଆଲୋଚନା କରୁ ନ ଥିଲୁ ବା ସେଭଳ କଛି କଳ୍ପନା ମଧ୍ୟ କରୁ ନ ଥିଲୁ । ଅନେକ ମନେ କରନ୍ତି ଯେ ମଣିଷ ଡରିଗଲେ ତାକୁ ଭୂତ ଭଳ କଛି ଗୋଟିଏ ଭ୍ରମ ହୁଏ । କନ୍ତୁ ସେତେବେଳେ ଆମର ଡରବାର ପ୍ରଶ୍ନ ଜମାରୁ ନ ଥିଲା । ଭୂତ ବୋଲ ଯେ ଗୋଟିଏ କଛି ଅଛି ଏ ବଶ୍ୱାସ ସେ କାଳଯାଏଁ ମୋର ନ ଥିଲା । ଏହି ଘଟଣା ପରେ କନ୍ତୁ ମୁଁ ଅନେକ ସମୟରେ ମନକୁ ମନ ପଚାରେ ସେଇଟା ତେବେ କଣ ଭୂତ ?



(୭)

**ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର**

ଅନୁଭୂତିଟି ମୋର ଶୈଶବର, ସେତେବେଳକୁ ମୋତେ ପାଞ୍ଚ ପୂର ଛ ଚାଲୁଥାଏ କ କଣ । କୁମାର ପୂର୍ଣ୍ଣିମା କମ୍ବା ତାହାର

---

ଏକାକ୍ଷୀ-ସ୍ୱପ୍ନ କ ଗଲେ ଗୁଡ଼ ମୋତେ ଏକ ଏକ କର
ଏହି ବସ୍ତ୍ର ମଝିରେ ବଶ୍ୱବିଚିତା ରୁହ ଏବେ ମୋଠାରେ ମୋ ଶତ୍ରୁ ଘେର

ଦିନେ ଦୁଇଦିନ ପୂର୍ବ ହେବ । ଆମ ଗଞ୍ଜାମ ତଟେ କୁମାର ପୂର୍ଣ୍ଣିମା ଏବଂ ତାହାର କିଛିଦିନ ଆଗରୁ ମଧ୍ୟ ଯଥାର୍ଥରେ ଆବାଳ-ବୃଦ୍ଧ-ବନିତା ତାସ୍, ପଶା, କଉଡ଼ି ଆଦି ଖେଳରେ ବ୍ୟସ୍ତ ରହିବା ଏକ ପରମ୍ପରା । ପିଲାମାନେ ଏବଂ ମାଇକିନିଆଏ ସେଇ କେତୋଟି ଦିନ ଖୁବ୍ କଉଡ଼ି ଖେଳ ଖେଳନ୍ତି । ସେହିବର୍ଷ ମୋ ନନା ମୋପାଇଁ ଗୋଟିଏ ଧୋବ ସରୁ ସରୁ ହୋଇ ବଢ଼ିଆ କଉଡ଼ିଟିଏ ବାଛି ଦେଇଥାନ୍ତି, ଦୁଇ ନାନୀ ଓ ଅନ୍ୟାନ୍ୟ ସଙ୍ଗୀଙ୍କ ସହ ଖେଳିବା ଲାଗି । ଯଦିଚ ମୋତେ କଉଡ଼ି ଫୁଟାଇବା କାଇଦା ଭଲ ଜଣା ନ ଥାଏ ମୋ କଉଡ଼ିଟି ସ୍ୱଗୁଣରେ ଅନ୍ୟାନଙ୍କ କଉଡ଼ି ଭିତରେ ଭରି ଫୁଟେ, ସେହି କାରଣରୁ ମୁଁ ଜିଣି ଯାଏ, ଘଟଣା ଦିନ ମୁଁ କଉଡ଼ିଟିକୁ କେଉଁଠି ହଜାଇ ଦେଲି, ତାକୁ ହଜାଇ ମୁଁ କାନ୍ଦି ଲାଗିଲି । ବହୁତ ଖୋଜା ଖୋଜି ହେଲା, କାନ୍ଦ ବିକାନ୍ଦ କିଛି ବାକି ରହିଲା ନାହିଁ କିନ୍ତୁ କଉଡ଼ିଟି ଆଉ ମିଳିଲା ନାହିଁ । କଉଡ଼ି ନ ପାଇ ମୁଁ ଖାଇ ନ ଥାଏ । ଦୋହଡା ଜିଆ ବେଳ ଅର୍ଥାତ୍ ଦିନ ତିନଟା ବେଳୁ ସନ୍ଧ୍ୟା ଯାଏଁ ବୋଉ କଉଡ଼ି ଖୋଜାରେ କଟାଇ ସାରିଥାଏ, ଶେଷରେ ସେ ନିରାଶ ହୋଇ ମୋତେ ନାନାପ୍ରକାର ବୁଝାଇବାର ଚେଷ୍ଟା କରି ଭାତ ଥାଳିଆଏ ଧରି ପିଣ୍ଡାରେ ବସିଲା । ମୁଁ କିନ୍ତୁ ନ ଖାଏ, ଖାଲି ଜିଗର ଧରିଥାଏ-ମୋ କଉଡ଼ି କାହିଁକି ହଜିଲା, ବୋଉ ଅନ୍ୟ ଉପାୟ ନ ଦେଖି ମୋତେ ମାରିବାକୁ ଆରମ୍ଭ କଲା । ଏତିକିରେ ଟଖୋଲା ଆକାଶରୁ ଆଚମ୍ବିକ ଭାବେ ପିଣ୍ଡା ଉପରକୁ ଆମେ ବସିବା ସ୍ଥାନ ନିକଟକୁ ଫିଙ୍ଗି ହୋଇ ପଡ଼ିଲା ମୋର ସେହି

---

ଯେ ଆସେ ଯାଏ ଚହଁ ଫସି ସେ
ଦିନ ସରେ ନାହିଁ ତାର ଏକାକୀ ଭ୍ରମର ଏଣେ ତେଣେ ଯେ

'ଦୁର୍ଲଭ' କଉଡ଼ିଟି, ସେଇଟା ସେଇଁଆଡ଼ୁ ପଡ଼ିଲା ସେଆଡ଼ୁ ମଣିଷ ଚେଷ୍ଟା କଲେ ବି ଫିଙ୍ଗିବା ସମ୍ଭବ ନୁହେଁ । ସେତେବେଳକୁ ପୁଣି ଘରେ ମୁଁ ଓ ବୋଉଛଡ଼ା ଆଉ କେହି ନ ଥିଲେ ।

ଘଟଣାର ଅଳ୍ପକାଳ ପୂର୍ବେ ମୋ ଗୋସାଇଁମା ମରି ଯାଇଥାଏ । ମୁଁ ଘରର ବଡ଼ ପୁଅ ଭାବେ ସ୍ନେହମୟୀ ବୁଢ଼ୀର ଆଦର ଲୁଟିକରିବାକୁ ସମର୍ଥ ଥିଲି । ମୋର ସମସ୍ତ ଅଳି, ଜଞ୍ଜାଳକୁ ସହି ନେବାକୁ ସେ ସୁଖ ମଣୁଥିଲେ । ତାଙ୍କର ବିୟୋଗ ପରେ ଘଟଣାଟି ଘଟିଥିବା ହେତୁ ମୋ ବୋଉ ଠିକ୍ କଲା ଯେ ଗୋସାଇଁ ମାଆଁ କଉଡ଼ିଟିକୁ ଖୋଜି ଆଣିଦେଲେ । ବୋଉର ସିଦ୍ଧାନ୍ତକୁ ଅବିଶ୍ୱାସ କଲେ ଘଟଣାଟିକୁ ଅନ୍ୟ ପ୍ରକାର ବୁଝିବା ସମ୍ଭବ ନୁହେ । ଭୂତ ଓ ପ୍ରେତ ଅନେକ ସ୍ଥଳେ ଧ୍ୱଂସାତ୍ମକ ଏବଂ ଭୟାନକ କାଣ୍ଡ କରିବା ଶୁଣିବାକୁ ପ୍ରଚୁର ମିଳେ । କିନ୍ତୁ ତାଙ୍କଠାରେ ମଧ୍ୟ ଯେ ମାନବ ସୁଲଭ ସ୍ନେହ ଓ ମମତା ରହିଛି ଏକଥା କ୍ୱଚିତ୍ ଅନୁଭୂତ ହୁଏ । ମଣିଷକୁ ସ୍ନେହ କରିବା ଅପେକ୍ଷା ହତ କରାଇବାକୁ ସେମାନେ ଅଧିକ ମାତ୍ରାରେ କାହିଁକି ଯାଆନ୍ତି ?



(୭)

## କାଟଜୁଙ୍କର ବାଳିକା

**ଜବଲପୁର:**—ମଧ୍ୟପ୍ରଦେଶର ମୁଖ୍ୟମନ୍ତ୍ରୀ ଡା: କୈଳାସନାଥ କାଟଜୁ ଜବଲପୁର ଗସ୍ତରେ ଆସିଥିଲାବେଳେ ତାଙ୍କର ସ୍ୱର୍ଣ୍ଣଲତା

---

ଗୁରୁ କନ୍ୟା ସମ ଦେଖ ସଭ ସହ ଯାଜିକାଙ୍କୁ
ଯେ ଯତ୍ନେ ବିଦ୍ୟାସୁନେ ଅଛନ୍ତି ରହି ତୁମରି ସାଥେ ଯେ ହାଇ

ନାମରେ ଗୋଟିଏ ବାଳିକା ସମ୍ବନ୍ଧ ଦେଖା ହୋଇଥିଲା-ବାଳିକାଟିର ବିଶେଷତ୍ୱ ହେଉଛି ଯେ ସେ ତାର ପୂର୍ବ ଦୁଇ ଜନ୍ମର ବିଶେଷ ଘଟଣାବଳୀର ଉଲ୍ଲେଖ କରି ପାରୁଛି-ବର୍ତ୍ତମାନ ତାର ବୟସ ମାତ୍ର ଏଗାର ବର୍ଷ-ତାର ବାପାଙ୍କର ନାମ ଶ୍ରୀ ଏମ୍, ଏସ୍, ମିଶ୍ର । ତାଙ୍କ ଘର ଛତରପୁର ଏବଂ ସେ ସେଠାରେ ଶିକ୍ଷାବିଭାଗରେ କାମ କରନ୍ତି ।

ଡକ୍ଟର କାଟଜୁଙ୍କ ରହଣି କାଳରେ ଏମାନେ ମଧ୍ୟ ଜବଲପୁର ଆସିଥିଲେ-ମୁଖ୍ୟମନ୍ତ୍ରୀ ଏହା ଜାଣିପାରି ସେ ଝିଅଟିକୁ ତାର ବାପା ଓ ମାମୁଁଙ୍କ ସହିତ ରାଜଭବନକୁ ନିମନ୍ତ୍ରଣ କରିଥିଲେ । ବାଳିକାଟି ବିଷୟ ଡକ୍ଟର କାଟଜୁ ପୂର୍ବରୁ ନାନା ପତ୍ର ପତ୍ରିକାରୁ ଜାଣିଥିଲେ । ଡକ୍ଟର କାଟଜୁଙ୍କ ବ୍ୟତୀତ ଜବଲପୁର ବିଶ୍ୱବିଦ୍ୟାଳୟର ଭାଇସ୍ ଚାନ୍ସେଲର ଶ୍ରୀ କେ ଏସ୍ ଦୁବେ, ଆସେମ୍ବ୍ଲି ସଭ୍ୟ ଶ୍ରୀ କେ, ପି,-ପାଣ୍ଡେ, ଡିଭିଜନାଲ କମିଶନର ଶ୍ରୀ ସି, ଏଲ, ଗୁପ୍ତ, ଜିଲ୍ଲା ମାଜିଷ୍ଟ୍ରେଟ୍ ଶ୍ରୀ, ଆର୍, ସି, ଶ୍ରୀବାସ୍ତବ ଏବଂ ଅନ୍ୟ କେତେ ବିଶିଷ୍ଟ ସରକାରୀ ଓ ବେସରକାରୀ ଭଦ୍ରବ୍ୟକ୍ତି ମଧ୍ୟ ସେଠାରେ ଉପସ୍ଥିତ ଥିଲେ ।

ବାଳିକାଟି ସହିତ ଡକ୍ଟର କାଟଜୁ ପ୍ରାୟ ୪୦ ମିନିଟ ପର୍ଯ୍ୟନ୍ତ କଥାବାର୍ତ୍ତା କରିଥିଲେ ଏବଂ ପୂର୍ବଜନ୍ମର ପ୍ରତ୍ୟେକ ଘଟଣା ଜାଣିବାକୁ ଇଚ୍ଛା କରିଥିଲେ-ଡକ୍ଟର କାଟଜୁ ଯେତେବେଳେ ଝିଅଠାରୁ କେତେକ ବିଶିଷ୍ଟ ଘଟଣା ଓ ବିଶେଷ କରି ଆସାମୀ ଭାଷାର ସଙ୍ଗୀତର ଆବୃତ୍ତି ଶୁଣିଲେ ସେ ଅତିଶୟ ମୁଗ୍ଧ ହୋଇ ଯାଇଥିଲେ-ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ସ୍ୱର୍ଣ୍ଣଲତା ତାର ଏହି ଜନ୍ମରେ କେବେହେଲେ

---

ଥିରି ହୁଅ ମନ ଗୁଞ୍ଜି ଝୁଞ୍ଜିଆ ଲାଗୁଛି ସିନା
ଆସିବେ ପରା ପ୍ରିୟ ତୁମେ ହେବ ତେବେ ପୁଲକମନା ।

ଆସାମ କମ୍ବା ପଶ୍ଚିମ ବଙ୍ଗ ଦେଖିନାହାଁନ୍ତି କମ୍ବା କୌଣସି ନୃତ୍ୟ ଗୀତ ଶିକ୍ଷା ପାଇନାହାଁନ୍ତି ।

ଆହୁରି ମଧ୍ୟ ଜଣାଯାଇଛି ଯେ କଲେକ୍ଟରଙ୍କ ଘରେ ଜବଲ-ପୁରର ସିଭିଲ ସର୍ଜନ ମଧ୍ୟ ଝିଅଟିକୁ ଦେଖି ଆଶ୍ଚର୍ଯ୍ୟ ହୋଇଥିଲେ ଏବଂ ତାର ପିତାଙ୍କୁ ଝିଅଟିର ମନସ୍ତାତ୍ତ୍ୱିକ ପରୀକ୍ଷା ଏବଂ ମସ୍ତିଷ୍କକୁ ଏକସ୍-ରେ କରିବାକୁ ଉପଦେଶ ଦେଇଥିଲେ —

ଜୁଲାଇ ତା ୧୯ ରିଖ "ହିତବାଦ" ପତ୍ରିକାରେ ପ୍ରକାଶିତ ଇଂରାଜୀ ଲେଖାର ଅନୁବାଦ—

---

(୮)

## ଡି. ଭି. ଗୋ ଆଚାର୍ଯ୍ୟ

ମୋର ଜଣେ ବନ୍ଧୁ ଭେଙ୍କଟ ବରଦନ୍, ସେ ଶିକ୍ଷକତା କରନ୍ତି । ଥରେ ଥରେ ସେ ପ୍ରଥମରୁ ଚାକର ପୁଚାଇଲାଭଳି ଏକ ପ୍ରକାର ଅବ୍ୟକ୍ତ ଶବ୍ଦ କରନ୍ତି ପୁଣି ଘୋଡ଼ା ଚଲାଇବାର ସଙ୍କେତ ହାତରେ କରନ୍ତି । ଠିକ୍ ଏପରି ଦୁଇତିନିଥର କଲାପରେ, ମୂର୍ଚ୍ଛିତ

---

ବାଇବେଲ ଭୂତ ବିଷୟରେ, ମାର୍କ ୫. ୧-୨୦ ପଦ ମଧ୍ୟରେ ଘୁଙ୍ଗା ଭୂତ, ମାର୍କ ୭. ୨୪-୩୦ ଓ ମାଥିଉ ୧୨, ୨୨-୨୭ ମଧ୍ୟରେ ଅଶୁଚି ଭୂତଗ୍ରସ୍ତ ଲୋକ ଲୂକ ୧. ୩୧-୩୭ ମଧ୍ୟରେ, ଅଛି ଏବଂ ଯୀଶୁ ଏମାନଙ୍କୁ କପରି ଧମକ ଦେଇ ବାହାର କରିଥିଲେ ସେ ବିଷୟରେ ମଧ୍ୟ ଲେଖାଅଛି ।

ହୋଇ ପଡନ୍ତି । ମୂର୍ଚ୍ଛା ହେବା ସମୟରେ ହାତ ଗୋଡ଼ ଛଟପଟ କରନ୍ତି । ଭୂମିରୁ ଜାବ ବାହାରେ, ସମୟ ସମୟରେ ଜଭ କାମୁଡ଼ି ପକାନ୍ତି ।

ଏହାଙ୍କ ପିତା ଜଣେ ବଡ଼ କଣ୍ଟ୍ରାକ୍ଟର, ଏହାଙ୍କର ଦୁଇଟି ମାତ୍ର ପୁଅ, ସାନପୁଅ ରଙ୍ଗନାଥନ୍ ବର୍ତ୍ତମାନ ପୋଷ୍ଟାଲ ସୁପରିଣ୍ଟେଣ୍ଡେଣ୍ଟ କାମ କରୁଅଛନ୍ତି ।

ଅର୍ଥ ଅଭାବ ନ ଥିବାରୁ ପିତା ଭେଙ୍କଟ ବରଦନ୍‌ଙ୍କ ଚିକିତ୍ସା ସକାଶେ ବହୁଅର୍ଥ ବ୍ୟୟ କରୁଥାନ୍ତି । ଏଲୋପାଥି, ହୋମିଓପାଥି, ଆୟୁର୍ବେଦ, ପ୍ରାକୃତିକ ଚିକିତ୍ସା ପ୍ରଭୃତିରେ ଉପକୃତ ନହେବାରୁ ଶେଷରେ ମାନ୍ତ୍ରିକ ବା ଗୁଣିଆ ମାନଙ୍କର ଆଶ୍ରୟ ନେଲେ । ଏଠାରେ ମାଲବାରୀ ମୁସଲମାନ ପ୍ରଭୃତି ବହୁଗୁଣିଆ ଚେଷ୍ଟା କରି ବିଫଳ ହେବା ପରେ ଶୁଣାଗଲା ତାଙ୍କ ଗ୍ରାମ ନିକଟ . ମାଇଲ ଦୂରରେ ଜଣେ ଗୁଣିଆ ଆସ୍ଥଗୋପନ କରି ରହିଅଛନ୍ତି ।

ଶେଷରେ ତାଙ୍କର ଆଶ୍ରୟ ନିଆଗଲା । ସେ ଗୋଟିଏ କୋଠରୀରେ ଗୋଟିଏ ଦୁର୍ଗା ମୂର୍ତ୍ତି ଖଚିତ ବଡ଼ ଦୀପାଳିଟିଏ ଜାଳି ନାନାପ୍ରକାର କୋଠି କାଟି ଭେଙ୍କଟ ବରଦନ୍‌ଙ୍କୁ ବସାଇ ପ୍ରତିଦିନ ଜପକରନ୍ତି । ପ୍ରଥମଦିନ ସେ କହିଲେ ରାତ୍ର ବେଙ୍କଟ ବରଦନ୍ ପାଖରେ ଜଣେ ଶୋଇବେ କିନ୍ତୁ ସାବଧାନ ! ଅବାଧିତା ଦୃଷ୍ଟିରୁ ଭୂତ କେତେବେଳେ ବିପଦ ଘଟାଇପାରେ, ଏହାଶୁଣି ତା ପାଖରେ କେହିହେଲେ ଶୋଇ-

---

ବାଜିଲା ଘଣ୍ଟା ଗୀର୍ଜାରେ, ବିବାହବେଳ ଆସିଲା ଘନାଇରେ,
ଶାନ୍ତି, ଶାନ୍ତି, ପବିତ୍ରତା, ତାହାର ମଧ୍ୟ ଦେଇ ସେ ବିବାହ ବେଦୀରେ ।

ବାକୁ ସାହସ କଲେ ନାହିଁ । ଏହାଜାଣି ପ୍ରକୃତିସ୍ଥ ଅବସ୍ଥାରେ ଭେଙ୍କଟ ବରଦନ୍ ମୋ ପାଖରେ ନିଜର ଦୁଃଖ ପ୍ରକାଶ କଲେ । ସାଙ୍ଗର ଦୁଃଖରେ ମୁଁ ତରଳିଯାଇ ଯାହାହେଉ ପଛକେ ଶୋଇବାକୁ ପ୍ରତିଶ୍ରୁତି ଦେଲି । ଦିନପରେ ଦିନ ବାଇଶି ଦିନ ବିତିଲା । ତେଇଶି-ଦିନ ମଧ୍ୟାହ୍ନରେ କୋଠରୀର ନୀରବତାକୁ ଭେଦ କରି ଚିତ୍କାର ଉଠିଲା । ସମସ୍ତେ ଯାଇ ଦେଖିଲେ ଭେଙ୍କଟ ବରଦନ୍ ଆସନରେ ଉପବିଷ୍ଟ, ତାର ମୁଣ୍ଡ ଓ ଦେହ ଚକ୍ରାକାରରେ ଘୂରୁଛି ଓ ସେ ବିକଳ ଚିତ୍କାର କରୁଅଛି । ସେହିଦିନ ଗୁଣିଆ ଖୁବ୍ ମୋଟା ମୋଟା କାଠଜାଳି ସେଥିରେ ଘିଅ, ନିମ୍ବତେଲ ଓ ଆଉ କଣ କଣ ମିଶାଇ ଆହୁତି ଦେଉଅଛି । ଏପରି ଗୃଳିବା ସମୟରେ ଟେ,ବ, ଉତ୍ତ୍ୟକ୍ତ-ହୋଇ ସେହି ହୋମ ନିଆଁକୁ ଦୁଇହାତରେ ମନ୍ଥି ଗୃରିଆଡେ ବୁଣି-ବାକୁ ଆରମ୍ଭ କଲା । ଏଥିରେ ଭୟପାଇ ପାଖରେ ଥିବା ପ୍ରାୟ ଦଶ-ବାର ଜଣ ମଜବୁତ ବ୍ୟକ୍ତି ଧରିବାକୁ ଚେଷ୍ଟା କଲାବେଳକୁ ସମସ୍ତଙ୍କୁ ସେ ଏପରି ଭାବରେ ଧରି ଫିଙ୍ଗି ଦେଲା ଯେ ସେମାନଙ୍କର ଧରିବାର ସବୁଚେଷ୍ଟା ବିଫଳ ହେଲା । ଏ ଭିତରେ ଗୁଣିଆ ତା ମୁଣିରୁ କି ଦୁଇ ଖଣ୍ଡ ହାଡ଼ ବାହାର କରି ସେଥିହାରା ଗୋଟିଏ କାଚରୁ କଣ ଗୋଟିଏ ତରିଳ ଜିନିଷ ବାହାର କରି ରୋଗୀର ଗୃରିପାଖରେ ରଖି ଦେବାରୁ ସେ ଅତି ବିକଳ ଭାବରେ କାନ୍ଦି ଚିତ୍କାର କରି ନିର୍ଦ୍ଦିଷ୍ଟ ସ୍ଥାନରୁ ଘୁଞ୍ଚି ପାରିଲା ନାହିଁ । ଏପରି କେତେକ ସମୟ ଚିତ୍କାର କଲାପରେ ଗୁଣିଆ ପଚାରିଲା, ଆସ୍ଥା ତୁ କିଏ ଏବଂ ତୋର

---

ହେନଲଡ ତୁମେ ମୋ ପ୍ରାଣପ୍ରିୟା କନ୍ୟା, ନାତୁଣୀ ହାତ,
ଶୂନ୍ୟ କରି ଆମ ଘର— ତଥାପି ଭଲ ପାଇ ତାକୁ ଆମ ଶୂନ୍ୟ
ଗୃହ ପୂର୍ଣ୍ଣକର ।

ଇତିବୃତ୍ତ ନ କହିଲେ ତୋତେ ଛାଡ଼ିବ ନାହିଁ, କିନ୍ତୁ ଭୂତ ଏହାର ଉତ୍ତର ନ ଦେଇ କେବଳ ଚିତ୍କାର କରିବାରେ ଲାଗିଥାଏ । ଏପରି ସେହିଦିନ ମଧ୍ୟ ବିତିଗଲା । ତାର ପରଦିନ ଅର୍ଥାତ୍ ୨ ଦିନ ଗୁଣିଆ ଜପସ ଓ ହୋମ ଆରମ୍ଭ କଲା । ହୋମରେ ପ୍ରତି ଆହୁତି ସମୟରେ ଭେ, ବ, ଚିତ୍କାର କରୁଥାଏ, ଏପରି କେତେକ ସମୟ ଅତିବାହିତ ହୋଇଗଲା ପରେ ହଠାତ୍ ଚିତ୍କାର କଲା ମୋତେ ଛାଡ଼ିଦେ, ମୁଁ ଚାଲିଯିବି । ଏହା ଶୁଣି ଗୁଣିଆ କହିଲା, ଆଚ୍ଛା ତୁ ତୋର ଇତିବୃତ୍ତ ଓ ପରିଚୟ ନ ଦେଲେ ତୋତେ କଦାପି ଛାଡ଼ିବ ନାହିଁ, ଏଣୁ ତୋର ନାମଟି କହ । ଏହା ଶୁଣି ଭୂତ କହେ ମୁଁ କହିବି ନାହିଁ, ଏ ଯେଉଁ ଝିଅକୁ ଧରିଛି ତାକୁ ବି କଦାଚିତ୍ ଛାଡ଼ିପାରିବି ନାହିଁ । ହିଁ ଏଠାରେ ଗୋଟିଏ ବିଷୟ କହିବାରେ ପାଶୋରି ଗଲି । ଶ୍ରୀ ଭେଙ୍କଟ ବରଦିନ-ଙ୍କର ସାନଭାଇର ଦୁଇଜଣ ଶ୍ୟାଳିକା ଜଣେ ଆଇ, ସି, ଏସ୍, ଓ ଜଣେ କେମିଷ୍ଟଜେକ୍ ବର୍ତ୍ତମାନ ମେଟ୍ଟୁର ପ୍ରୋଜେକ୍ଟରେ କେମିଷ୍ଟ ଚାକିରି କରନ୍ତି । ଏମାନେ ଭୂତକୁ ବିଶ୍ୱାସ ନ କରିବାରୁ ଏମାନଙ୍କୁ ସ୍ୱତନ୍ତ୍ରଭାବେ ଡକାଯାଇ ଥିଲା । ଏବଂ ଭାରତର ଜଣେ ବିଶିଷ୍ଟ ମେଜିସିୟନ୍ ଶ୍ରୀ ଟି, ଏମ୍ ଶ୍ରୀନିବାସାଚାରି ସ୍ୱାର୍ ମଧ୍ୟ ଥାଇ ଏହି ବିଷୟ ଗୁଡିକ ପ୍ରତ୍ୟକ୍ଷରେ ଦେଖିଥାନ୍ତି । ଏହା ପରେ ପୁଣି ଗୁଣିଆ ପଚାରିଲା ତୋର ନାମ କ'ଣ ।

ଭୂତ:—ମୋର ନାମ ନାରାୟଣ ଆୟାର ।

ତୋର ଗ୍ରାମ କେଉଁଠି !

ଭୂତ-ଚେଙ୍ଗଲପଟ୍ ନିକଟବର୍ତ୍ତୀ ତିରୁନୂରଗ୍ରାମ

---

ସୁଖର ଦିନ ଆସେ, ଯାଏ ଚାଲି ସେ କେତେ ବେଗରେ
ମରମ ପରଶ ମରମରେ ରହେ, ଥରି ଥରି ରହେ ସବୁବେଳେ ।

ତୋର ବୟସ କେତେ ।

ଭୂତ—ପ୍ରାୟ—୭୨

ତୁ କପର ଭୂତହେଲୁ ?

ଭୂତ—ମୋର ପ୍ରାୟ ୫ବର୍ଷ ବୟସର କଥା, ସେତେବେଳକୁ ମୋର ପିତା ଓ ମାତା ମରଯାଇ ଥାନ୍ତି । ମୁଁ ମାଧୋରସ୍ କର ଝାଇ ବେଦ ଅଧ୍ୟୟନ କରୁଥାଏ । ଦନେ ମୁଁ ପ୍ରାତଃକାଳରେ ଗୋଟିଏ ବାମ୍ଫିରେ ସ୍ନାନ କରୁ କରୁ ଗୋଡ଼ ଖସି ବୁଡ ମରଗଲି, ତାର କେତେଦନପରେ ଗୋଟିଏ ଶ୍ରେଷ୍ଠ ଝିଅ ଦେହରେ ଆବେଶ ହେଲି, ସେହ୍ବ ଝିଅଟିକୁ ଜଣେ ଗୁଣିଆ ନେଇ କାଳୀ ମନ୍ଦରରେ ବସାଇଲ୍ଲ । ସେଠାରେ ଭଗବାନ୍ଙ୍କ ଆଦେଶରୁ ସେହ୍ବ ପିଲାଟିକୁ ଛାଡବାକୁ ପଡ଼ିଲା ଏବଂ ସେହ୍ବ ଆଦେଶରେ ସେଠାରୁ ପ୍ରାୟ ୧୪ ମାଇଲ ଦୂରକୁ ଚାଲିଯିବାକୁ ହେଲା । ସେଠାରୁ ଯାଇ ପାଲର୍ ନାମକ ନଦୀକୁ ପାର ହେଲା ବେଳକୁ ଜଣକୁ ଧର ଏହି ଗ୍ରାମରେ ଉପସ୍ଥିତ ହେଲ । ଏଠାରେ ଗୋଟିଏ ବରଗଛକୁ ଆଶ୍ରୟ କର ରହିଛି, ଏପର ଅବସ୍ଥାରେ ଏହି ଯେଉଁ ପିଲାକୁ ଧରିଛି ଏହାର ଜେଜ ମା ସେହି ବଟଗଛ ମୂଳେ ଥିବା ବାମ୍ଫିକୁ ସ୍ନାନକୁ ଆସିଥାଏ । ସେ ହଠାତ୍ ମୋର ଛାଇକୁ ଦେଖି ଚମକ ପଡ଼ିଲା, ସେତେବେଳକୁ ତାର ଅଳ୍ପଦନ ହେଲା ଗର୍ଭାବସ୍ଥା ହୋଇଥାଏ, ଏଥିପୂର୍ବରୁ ତାର ଅନେକ ଗର୍ଭସ୍ରାବ ହୋଇଥାଏ । ଏଣୁ ସେ କହିଲା ଏହି ବଟଗଛ ଉପରେ ଯେ ଅଛ ମୋର ଯଦ ଏହି ଗର୍ଭରକ୍ଷା ହୋଇଯ ଏ ତେବେ ମୁଁ ଛତ ମାସରେ ପୂଜାଦେବ, ମୁଁ ସେ ଗର୍ଭକୁ ରକ୍ଷାକଲି, ସେ ମଧ୍ୟ

---

ଶ୍ରବନା ତୋପାଇଁ ଏତେ, ଜାଣି ନ ଥିଲ ପ୍ରଥମେ ସତେ
ତୁ ଦେଖିଛୁ, ମୁଁ ଭୁଲିଛି, ମାଟ ଗୀତ ତୋର ମୋତେ ଡାକିଲା ପୁଣି
କେତେ ।

ଭୂତ ମାସରେ ପ୍ରଜାଧାଏ । ଯେଉଁ ଗର୍ଭରୁ ଯେଉଁ ପିଲାଟି ଜାତହେଲା ସେ ଯୁବକ ହେଲାପରେ ମୁଁ ଥିବା ବରଗଛ ହେତୁ ଭୂମିରେ ଖନ୍ଦ ଜଣା ହେଉଛି ମନେକରି ଗଛଟିକୁ ହଣାଇ ସେହି ଭୂମିକୁ ଚାଷ ଭୂମିରେ ପରିଣତକରି ଦେଲା । ମୋର ନିବାସ ଖଣ୍ଡିକ ନଷ୍ଟ ହୋଇ ଯିବାରୁ ମୁଁ ସେ ସ୍ଥାନକୁ ଛାଡ଼ି ପୁଣି ପାଲୁର୍ (କ୍ଷୀରନଦୀ) ଅଭି-ମୁଖରେ ଗତିକରି ଏଣେତେଣେ ପ୍ରାୟ ତିନିବର୍ଷକାଳ ବୁଲିଲି । ଦିନେ ପାଲୁର ତଟରେ ଗୋଟିଏ ଘୋଡ଼ାକୁ ମୋହି ତାକୁ ମୋର ବାହନରୂପେ କରିନେଲି । ଏପରି ଅବସ୍ଥାରେ, ଏହି ପିଲାଟି ଓ ଏହାର ମା, ବାପ ଏବଂ ଜେଜେମା ପ୍ରଭୃତି ପରିବାରବର୍ଗ ଦେଖିବାକୁ କାଞ୍ଚିଭରମ୍ ଯାଉଥାନ୍ତି । ଏମାନଙ୍କୁ ପାଲୁର୍‌ରେ ଭେଟି ପ୍ରତିଶୋଧ ନେବାକୁ ଏହି ପିଲାଟିକୁ ଧରିଲି । ଜଣେ ପଚାରିଲେ–: ଆଚ୍ଛା ତୁ ଠାକରା ପିନ୍ଧାଉଛୁ କାହିଁକି ? ଭୂତ—ମୁଁ ଘୋଡ଼ା ଚଢ଼ି ଏହାଉପରେ ଆବେଶ ହେଉଥିବାରୁ ଠାକରା ଓ ଘୋଡ଼ା ଚଳାଇବାର ସଙ୍କେତ କରୁଛି । ଏହି ବିଷୟ ଗୁଡ଼ିକୁ ଅନୁସନ୍ଧାନ କରିବାପାଇଁ ଦୁଇଜଣ ଚେଙ୍ଗଲପଟ ପାଖ ତିରୁନୁର ଯାଇ ଅନୁସନ୍ଧାନ କରନ୍ତେ ତାହା ସତ୍ୟ ବୋଲି ପ୍ରମାଣିତ ହେଲା, ଏପରି ସେ ଭୂତ ଅନେକ ବିଷୟ କହିଗଲା ଯେଉଁଗୁଡ଼ାକ ଗୋଟିଏ ହେଲେ ଅସତ୍ୟ ନିରୂପଣ ହୋଇ-ପାରିନାହିଁ ।

ସେହି କେମିଷ୍ଟ ଗୋଟିଏ ଭେଣ୍ଡିଆ ପ୍ରକାଣ୍ଡ ତିନୁଲିଟିଛ ମଧ୍ୟରେ ଖଣ୍ଡରେ ଅପ୍ରତ୍ୟାଶିତ ଭାବେ ଗାର ଦେଇ ଭାଙ୍ଗିବାକୁ

ଭୂତ ଥିଲୁ ଦୂରେ, ଧୀରେ ଧୀରେ, ଆସିଲୁ ମୋ ପାଶରେ
ପୁଣି ଧୀରେ ଧୀରେ ମୁଁ ବି ଗଲି ତୋ ପକ୍ଷରେ, ଏବେ ପୁଣି ବିସ୍ମରଣ
କାହିଁକି ?

ଆଦେଶ ଦେଲେ । ସମସ୍ତଙ୍କ ସମ୍ମୁଖରେ ସେହି ଗଛଟି ମଝିରୁ ଭାଙ୍ଗି ପଡ଼ିଲା ।

ଦିନେ ମୁଁ ସେହି ଭେ. ବ.ଙ୍କୁ ଛାଡ଼ିଆସି ଆମ ବରଣ୍ଡାରେ ଶୋଇଅଛୁ । ଅଧନିଦ୍ରାରେ ଠିକ୍ ମୋର ପିତାଙ୍କ ଭଳି କଣ୍ଠରେ କହିଲା, ଆରେ ମୁଁ ତ ତୋର କୌଣସି ଅପକାର କରିନାହିଁ, ତୁ ମୋତେ ଏକୁଟିଆ କାହିଁକି ଛାଡ଼ି ଆସିଲୁ ବୋଲି ଡାକିଲା । ତାଙ୍କ ବରଣ୍ଡାରେ ଶୋଇଥିବା ଜଣକୁ ବସ୍ତ୍ରର ସହିତ ଟେକି ମଝିଦାଣ୍ଡରେ ଫୋପାଡ଼ି ଦେଲା । ଆଉଦିନେ ଆମ ଦୁଆରକୁ ଜୋରରେ ମାରିଲା ।

ଏପରି ବହୁ ଘଟଣା ଦେଖି ଯେଉଁ ଆଇ, ସି, ଏସ୍ ଓ କେମିଷ୍ଟ୍ରିର ଭୂତ ବିଶ୍ବାସ କରୁ ନ ଥିଲେ ସେମାନେ ମଧ୍ୟ ବିଶ୍ବାସ କରିବା-ଭଳି କାମ ଦେଖାଇଲା, ସେଗୁଡ଼ାକ ଲେଖାର ବିସ୍ତାର ଭୟରେ ଲେଖି ପାରୁନାହିଁ । ତା ପରେ ଯା, ଗୃହଳିପିବ କହି ଗୃହଳଗଲା, ପୁଣି ଛମାସ ପରେ ଆଉଥରେ ଉପଦ୍ରବ ଆରମ୍ଭ କଲା, ତା ପରେ ଭେଙ୍କଟ ବରଦନ୍ ମାନ୍ଦ୍ରାଜ ହାଇଦ୍ରାବାଦ ସେକେଣ୍ଡ୍ରାବାଦ ଗ୍ରେଡ଼-ଷ୍ଟେସନ୍ ଯାଇ ଦୁଇବର୍ଷ ପରେ ଯେଉଁ ଦିନ ଘରକୁ ଫେରିଲା ସେହିଦିନ କାଳିପୁର ନାମକ ଗ୍ରାମକୁ ଯାଇ ସେଠାରେ ଗୋଟିଏ ବାଡ଼ିରେ ପଞ୍ଚ ଭେଙ୍କଟ ମରିଥିବାର ଦେଖାଗଲା ।



ଅମିୟ ଝରାଇଲୁ ତୁହି ଅମିୟ ତୁହି<br>ତୋହର ଭାବନାରେ ଏବେ ରହିଁ, ରହିଁ, ମୁହିଁ ।

(୯)

**ଶ୍ରୀ କୃଷ୍ଣଚନ୍ଦ୍ର କର**

ସନ ୧୯୧୨ ମସୀହା କଥା । ମୁଁ ମହାସମୁଦ୍ର (ସି.ପି.ରେ) ଡିଷ୍ଟ୍ରିକ୍ଟବୋର୍ଡ ଓଭରସିଅର (District Board Overseer) ଥିଲି । ମୋତେ ଖରିଆଳ ରଜା ବୀର ବିକ୍ରମ ଦେବ ଖୁବ୍ ଭଲ ପାଉଥିଲେ । ତାଙ୍କୁ କହିଲି ନୃସିଂହନାଥ ଦେଖି ଯିବାକୁ । ସାହାଯ୍ୟ ମାଗିଲି । ସେ ସାହାଯ୍ୟ କଲେ । ଅତି ଦୁର୍ଗମ ପଥ । ବାଘ ଭାଲୁର ଭୟ ସେଠି ବେଶୀ । ବାଘମାନେ ଦଳ ଦଳ ହୋଇ ବୁଲନ୍ତି । କିନ୍ତୁ ନୃସିଂହନାଥରେ ସେମାନେ କାହାର କିଛି ଅନିଷ୍ଟ କରନ୍ତିନି ।

ନୃସିଂହନାଥ ଯେଉଁ ପାହାଡରେ ଅଛନ୍ତି ସେହି ପାହାଡରୁ ଗୋଟିଏ ଝରଣା ବାହାରି ତଳକୁ ବହି ଯାଉଛି, ମାଟି ତଳକୁ ।

ଦିନ ୯ଟା ହେବ ପ୍ରାୟ, ଜଣେ ସାଧୁ ଆମ ପାଖରେ ଉପସ୍ଥିତ, ତାଙ୍କୁ ଦେଖି ସମସ୍ତେ ଉଠିଲେ । ଶରୀରଟି ସୁଦ୍ଧ ଅସ୍ଥିମାଳ । ତା ଉପରେ ଚମଡା ଖଣ୍ଡେ ମାତ୍ର ଟାଙ୍ଗୁଣି ହୋଇଛି । କିନ୍ତୁ ମୁଖଟି ଆନନ୍ଦମୟ । ମୁଁ ବାବାଜୀଙ୍କୁ କିଛି ପଚାରିବାକୁ ଉଦ୍ୟତ ହେଲା ବେଳକୁ ସେ ଚିଲମଟି ମୋ ହାତକୁ ବଢାଇ ଦେଲେ । ମୁଁ ଗଞ୍ଜେଇ ପାଏ କେଉଁଠୁ । ନୃସିଂହନାଥ ବଗିଚାରୁ

---

ଏ ସବୁ ଦିନ ଗଲଣି ଚାଲି,
ମନେ ରହିଥିଲି କେତେ ଭଲି ଭଲି
ଏବେ ମନେ ନାହିଁ—ସୂର୍ଯ୍ୟ ହୋଇଛି ଅସ୍ତ, ରାତି ଯାଇଛି ପାହି ।

ପାଞ୍ଚୋଇ ଆଣି ଦେଲି । ବାବାଙ୍କ ଚରଣ ଧରି ବେହୋସ । ତାପରେ ୧୫।୨୦ ମିନିଟ ପରେ ସେ ବୃଦ୍ଧି କହିଲେ, ତୁମେ କଣ ଭାବିଲ ମୁଁ ମରିଗଲି ବୋଲି ।

ସେ ଉଠିଲେ । ମୋତେ ପଚାରିଲେ କଣ ସବୁ ରହି ଦେଖିଲ । ଆସ ଆଶ୍ରମ ଦେଖି ଆସିବ । ଏହା କହି ସେ ମୋର ହାତକୁ ଧରି ଏତେ ଜୋରରେ ପାହାଡ଼ ଉପରକୁ ଉଠିଗଲେ ଯେ ମୋ ଗୋଡ଼ ତଳେ ଲାଗୁ ନଥାଏ । ସେ ମୋତେ ସିଦ୍ଧାଶ୍ରମ ଦେଖାଇଲେ । ସେଠି ଖାଦ୍ୟ ଜିନିଷ ପ୍ରଚୁର ଦୁଷ୍ପ୍ରାପ୍ୟ । କିନ୍ତୁ ମୋତେ ସେ ଖାଦ୍ୟ ଖୁଆଇଲେ । ସାଧୁଙ୍କର ଅନୁଗାମୀ ହେବାର ଇଚ୍ଛା ମୋର ଥିଲା । କିନ୍ତୁ ମହାରାଜ କହିଲେ ତୋର ବୟସ ହୋଇନି । ବର୍ତ୍ତମାନ କର୍ମ କରିବାର କଥା । ତୋର କର୍ମ ଶେଷ ହେଲେ ମୁଁ ଦେଖାଦେବି ।

ମୁଁ କହିଲି ବୟସର ପାର୍ଥକ୍ୟ ଏତେ । ପୁଣି କେଉଁଦିନ ଆପଣଙ୍କ ସଙ୍ଗେ କେଉଁଠି ଦେଖା ହେବ ? ସେ କହିଲେ ଦେଖ ! ଏହି ନନ୍ଦ ହିମାଳୟରେ ପାଞ୍ଚହଜାର ବର୍ଷର ସାଧୁ ଅଛନ୍ତି । ମୁଁ ତ ସବୁ ଦେଖିଛି ।" ତାପରେ ସାଧୁ କେଉଁଆଡ଼େ ଚାଲିଗଲେ ।

ଦୀର୍ଘ ପଚିଶ ଛବିଶ ବର୍ଷ ପରେ ସେ ଆଉ ଥରେ ଦେଖା ଦେଇଥିଲେ ମୋ ଘରେ, ଚାରି ପାଞ୍ଚ ଦିନ ରହିଥିଲେ ମଧ୍ୟ ।



---

ମୁଁ କି ଖାଲି ମୋତେ ନେଇ ଏତେ ଭାବେଁ
ଆଉବି କିଛି ନାହିଁ ? ଜଗତ ମଙ୍ଗଳ ପାଇଁ ଏ ଭବେ ?

# ଭୌତିକ ଆତ୍ମା

ଶ୍ରୀ ସତ୍ୟନାରାୟଣ ରାଜଗୁରୁ

ଆମ ଦେଶରେ ବହୁ ପ୍ରାଚୀନ ଯୁଗରୁ ଭୌତିକ ଆତ୍ମା ସମ୍ବନ୍ଧେ ଅନେକ କଥା ଶୁଣାଯାଏ । ଅବଶ୍ୟ ଆଜିକାଲି ବିଜ୍ଞାନର ପ୍ରସାର ସଙ୍ଗେ ସଙ୍ଗେ ସେ ସବୁ କଥା ଅସମ୍ଭବ ଗପରେ ପରିଣତ ହେଲାଣି । ତଥାପି କେତେ କେତେ ଶିକ୍ଷିତ ବ୍ୟକ୍ତି ଅଦ୍ୟାପି ଭୂତଙ୍କୁ ବିଶ୍ୱାସ କରନ୍ତି । ଆମେରିକା ଓ ବିଲାତରେ ମଧ୍ୟ ଏଥିର ବୈଜ୍ଞାନିକ ଗବେଷଣା ହେବାର ଶୁଣିବାକୁ ମିଳେ । ତେବେ ଅଧିକାଂଶ ଭାରତୀୟ ଶିକ୍ଷିତ ସମ୍ପ୍ରଦାୟ ମନରେ ଏ ବିଷୟରେ ଗୋଟିଏ ଏପରି ପ୍ରଶ୍ନ ରହି ଯାଇଛି ଯେଉଁଥିରେ ସେମାନେ ଭୂତର ଅସ୍ତିତ୍ୱ ସମ୍ପୂର୍ଣ୍ଣରୂପେ ଉଡ଼ାଇ ଦେଇ ପାରନ୍ତି ନାହିଁ କିମ୍ବା ସମ୍ପୂର୍ଣ୍ଣ ଅବିଶ୍ୱାସ କରିବାକୁ ସାହସ କରନ୍ତି ନାହିଁ ।

ବାସ୍ତବରେ ଏ ଗୋଟିଏ ବଡ଼ କୌତୂହଳ ପ୍ରଶ୍ନ ଆମ ମନରେ ସୃଷ୍ଟି କରିଛି । ପିଲାଦିନେ ମୁଁ ନିଜେ ଭୂତର ଅସ୍ତିତ୍ୱ ବିଶ୍ୱାସ

---

ମଣିଷ ମଲା ପରେ ତାର ଆକାଶୀୟ ଶରୀର ନଷ୍ଟ ହୁଏ ନାହିଁ । ସେହି ଆକାଶୀୟ ଶରୀରଟି ଜୀବର ପାର୍ଥିବ ଜୀବନର ଉତ୍କୃଷ୍ଟ ଅବସ୍ଥାରେ ଗଢ଼ା ହୋଇଥାଏ । ସେହି ଆକାଶୀୟ ଶରୀର ଅଳ୍ପ ସମୟ କିମ୍ବା ସମୟ ସମୟରେ ଦୀର୍ଘକାଳ ପର୍ଯ୍ୟନ୍ତ ରହେ ଏବଂ ଅନ୍ୟାନ୍ୟ ସଂସାରକୁ ସ୍ପର୍ଶ କରେ ।

(ସର ଆର୍ଥାର କନେନ ଡଲେସଙ୍କ ଜୀବନୀ ପୁସ୍ତକ ୩୨୬ ପୃଷ୍ଠା ।)

କରୁଥିଲି । ଅନ୍ଧାର ରାତ୍ରରେ ଏକୁଟିଆ ଘରକୁ ଯିବା ସାହସ ମୋର ନ ଥିଲା, କିନ୍ତୁ ସ୍କୁଲକୁ ଗଲା ପରେ ଧୀରେ ଧୀରେ ମୋର ସେ ବିଶ୍ୱାସ ଲଭି ଆସିଲା । ତଥାପି ତାହା ନିର୍ମୂଳ ହେଲା ନାହିଁ । କାରଣ କେତୋଟି ଘଟଣାରୁ ମୁଁ ଫେର୍ ଭୂତର ଅସ୍ତିତ୍ୱ ବିଶ୍ୱାସ କରିବାକୁ ବାଧ୍ୟ ହେଲି । ବୋଧହୁଏ ତାହା ୧୯୧୯ ମସୀହାର କଥା । ସେତେବେଳେ ମୋର ବୟସ ମୋଟେ ୧୧ ବର୍ଷ । ପାରଳା-ଖେମୁଣ୍ଡିରେ ରାଜଗୁରୁ ସାହିରେ ଆମର ଜ୍ଞାତି ଭାଇମାନେ ରହନ୍ତି । ସ୍ୱର୍ଗୀୟ ଶ୍ୟାମସୁନ୍ଦର ରାଜଗୁରୁ (ମୋର ସମ୍ପର୍କୀୟ ପିତାମହ ଏବଂ ସେ "ପ୍ରବନ୍ଧାବଳୀ" ନାମକ ଗ୍ରନ୍ଥର ରଚୟିତା) ସେଠାରେ ରହନ୍ତି । ତାଙ୍କର ମୃତ୍ୟୁପରେ ସେଠାରେ ତାଙ୍କର ଭାଇମାନେ ଥିଲେ । ହଠାତ୍ ଦିନେ ତାଙ୍କ ଘରେ ଗୋଟିଏ ଅଦ୍ଭୁତ ଭୌତିକ କାଣ୍ଡ ଘଟିଲା । ଲୋକେ କହନ୍ତି ତାହା "ବୀର-ପେଷଣ" । ଏଥିର ତାତ୍ପର୍ଯ୍ୟ ଅଦ୍ୟାପି ଆମର ହୃଦବୋଧ ହୋଇ ନାହିଁ, ସେହି ଭୌତିକ କାଣ୍ଡ କେତେ ବର୍ଷ ପର୍ଯ୍ୟନ୍ତ ତାଙ୍କ ଘରେ ଦେଖା ଦେଉଥିଲା । ସେଥିରେ ପରି-ବାରର ପ୍ରତ୍ୟେକ ଏବଂ ପାଖ-ପଡ଼ିଶା ଲୋକେ ବହୁ ଦୁଃଖଭୋଗ କରିଥିଲେ । ସେହି ଭୌତିକ କ୍ରିୟା ନିମ୍ନମତେ ହେଉଥିଲା :—

୧—ରୁଷେଇ ଘରେ ଚୁଲିରେ ଭାତହାଣ୍ଡି ବସିଛି । ହଠାତ୍ ସେଥିରେ ଦେଖାଗଲା ରକ୍ତପରି କଣ ସବୁ ନାଲି ନାଲି ଜିନିଷ ଭାସୁଛି ।

---

ସେ ଦିନ କଥା, ଏ ଦିନ କଥା, ଦିନ ଦିନ କଥା, କେତେ ଘଟୁଛି, ଯାଉଛି ବିସ୍ମରଣେ, ଗୋଟିଏ ଗୋଟିଏ ଦିନ କଥା, ମନରୁ ନ ଯାଏ ପୋଛି ।

୨—ଘିଇ-ଶିଳପୁଆ ଯଥା ସ୍ଥାନରୁ ଉଠି ଶୂନ୍ୟରେ ଉଡ଼ଯାଇ
ଅନ୍ୟ ଜାଗାରେ ପଡ଼ୁଛି ।

୩—ଆକାଶରୁ ଇଟା ପଥର ଅଦ୍ଭୁତରେ ଘରେ ପଡ଼ୁଛି ।
କେବେ କେବେ ମଧ୍ୟ ମଣିଷ ଦେହରେ ବାଜୁଛି ।

୪—ମାଛ-ଶୁଖୁଆ ଖଣ୍ଡମାନ ଅଦ୍ଭୁତରେ ପଡ଼ଶା ଘରୁ ଆସି
ଅଗଣାରେ ପଡ଼ୁଛି ।

ଏମିତି ସବୁ କାଣ୍ଡ ମୁଁ ନିଜେ ଦେଖିପାରି ଫେର୍ ମୋ ମନରେ ଭୂତର ଅସ୍ତିତ୍ୱ ଦୃଢ଼ୀଭୂତ ହେଲା । ତା'ପରେ ଆମେରିକାର ଜଣେ ପଣ୍ଡିତ ଲେଡ୍‌ବିଟାରଙ୍କ ଲେଖାଗୁଡ଼ିକ ପଢ଼ି ସେ ବିଷୟରେ ଆଲୋଚନା କରିବାରୁ ମୋର ଧାରଣା ହେଲା ଯେ ପୃଥିବୀର ଗୋଟିଏ ଅନାବିଷ୍କୃତ ବିଷୟ ଅଦ୍ୟାପି ବୈଜ୍ଞାନିକ ମାନଙ୍କ ଗବେଷଣା ପରିସର ଭିତରକୁ ଆସିନାହିଁ ।

ଭାରତରେ ବୌଦ୍ଧ ଯୁଗରେ ମହାଯାନ ଓ ସହଜଯାନ ପନ୍ଥୀ ବୌଦ୍ଧ ଭିକ୍ଷୁମାନେ ବହୁ ପ୍ରକାର ମାନ୍ତ୍ରିକ ଶକ୍ତି ଲାଭ କରିଥିବା ବିଷୟ ତାରାନାଥଙ୍କ ଗ୍ରନ୍ଥରେ ଉଲ୍ଲେଖ ଅଛି । ସେଥିର ବିଶଦ ବିବରଣୀ ଏଠାରେ ଉଲ୍ଲେଖ କରିବା ନାବଶ୍ୟକ । ତେବେ ମୋର ବିଶ୍ବାସ ଓଡ଼ିଶାରେ ଯେଉଁ "ଗୁଣିଆ ପୋଥି" ଅଦ୍ୟାପି ଦେଖିବାକୁ ମିଳେ, ତାହା ସେହି ବୌଦ୍ଧ ଭିକ୍ଷୁମାନଙ୍କ ମନ୍ତ୍ର ଶକ୍ତି ସମ୍ପର୍କୀୟ ସାହିତ୍ୟ ବୋଲି କହିଲେ ଚଳେ । ପୂର୍ବେ କାମରୂପ ଓ ନାଳନ୍ଦା

---

ଉଛୁଳି ଉଠେ ପ୍ରାଣ ପରଶ ପାଇ କାହା ମନର
ପୁଣି ଉଛୁଳି ଉଠେ କାହାର ପରଶ ପାଇବାର ।

ଠାରୁ ଆରମ୍ଭ କରି ଓଡ଼ିଶାର ରତ୍ନଗିରି, ନଳତିଗିରି ପର୍ଯ୍ୟନ୍ତ ପ୍ରତ୍ୟେକ ବୌଦ୍ଧ କେନ୍ଦ୍ରରେ କେତେଗୁଡ଼ିଏ ବୌଦ୍ଧମନ୍ତ୍ର ପ୍ରସ୍ତର ଫଳକରେ ପ୍ରାଚୀନ କୁଟିଳ ଲି ିରେ ଉଲ୍ଲେଖ ହୋଇଅଛି । ତାକୁ ଆମେ "ଧାରଣୀ" ବୋଲି କହୁଁ । ଏପରି ଦୁଇଟି "ଧାରଣୀ" ବର୍ତ୍ତମାନ ଓଡ଼ିଶା ମ୍ୟୁଜିୟମରେ ଅଛି । ସେଥିରୁ ଗୋଟିଏ ଶ୍ରୀ. ଏ. ଘୋଷ ପ୍ରାୟ ଆଠବର୍ଷ ଆଗେ (Epigraphia Indica, Vol XXVI, pp. 172—3) ପ୍ରକାଶ କରିଛନ୍ତି । ସେଥିର ପାଠ ନିମ୍ନରେ ଉଦ୍ଧୃତ ହେଲା : -

"ଧର ଧର, ହର ହର, ପ୍ରହର ପ୍ରହର, ମହାବୋଧି-ଚକ୍ରଧରେ, ଚନ୍ଦ୍ର ଚନ୍ଦ୍ର, ଶତରଶ୍ମି ସହସ୍ରେନ୍ଦ୍ରତେ, ସର୍ବ ତଥାଗତା ଭିଷେକାଭିଷିକ୍ତେ, ଗୁଣଗଣମତେ, ବୁଦ୍ଧଗଣାବହାସେ, ମିଳ ମିଳ, ଗଗନ ତଳ ପ୍ରତିଷ୍ଠିତେ, ନଭସ୍ତଳେ, ଶମ ଶମ, ପ୍ରଶମ ପ୍ରଶମ ସର୍ବ ପାପପ୍ରଶମନେ, ସର୍ବ ପାପ ବିଶୋଧନେ, ହୁଲୁ ହୁଲୁ, ମହାବୋଧି ମାର୍ଗସମ୍ପ୍ରସ୍ଥିତେ । ସର୍ବତଥାଗତ ପ୍ରତିଷ୍ଠିତ ଶୁଦ୍ଧେ ସ୍ୱାହା, ମୁଳ ମଂନ୍ତ୍ରଃ, ସର୍ବ ତଥାଗତ ଗୋଚରବ୍ୟବଲୋକତେ ଜୟ ଜୟ ସ୍ୱାହା ହୃଦୟେ, ହୁରୁ ହୁରୁ ଜୟ ମୁଖେ ସ୍ୱାହା, ଉପହୃଦୟଂ, ଯଃ କଶ୍ଚି-ଦ୍‌ଭିକ୍ଷୁର୍ବା ଭିକ୍ଷୁଣୀ ବା ଉପାସକୋ ବା ଉପାସିକା ବା, ଅନ୍ୟୋବା, ଯଃ କଶ୍ଚିତ୍ ଶ୍ରାଦ୍ଧଃ କୁଲେ ପୁତ୍ରୋ ବା କୁଲେ ଦୁହିତା ବା ଇମାଂ ଧାରଣୀଂ ଲିଖିତ୍ୱା ଅଭ୍ୟଂତରଂ ପ୍ରକ୍ଷିପ୍ୟ ଚୈତ୍ୟଂ କରିଷ୍ୟତି, ତେନୈକେନ ଚୈତ୍ୟେନ କୃତେନ ଲକ୍ଷଂ ତଥାଗତ ଚୈତ୍ୟାନାଂ

---

ଜୀବନଟା ରସରେ ଭରା—ଏ ରସ ନ ଥିଲେ
ଜୀବନଟା ଖାଲି ସିନା ମରୁଭୂମି ସାହାରା ।

କୃତଂ ଭବନ୍ତୁ, ତେ ଚ ଚୈତ୍ୟାଃ ସବଗନ୍ଧପୁଷ୍ପଧୂପଚନ୍ଦ୍ରଗ୍ରମର ଛତ୍ରଧ୍ୱଜ ପତାକା ଭଦ୍ର ରୁପକରଣୈଃ ପଜିତା ଭବଂନ୍ତୁ, ନ କେବଲଂ ଚୈତ୍ୟମେବମପି ତୁ ବୁଦ୍ଧନନ୍ତଂ ଧର୍ମନ୍ତନ୍ଵ ସଂଘରନ୍ତଂ ଚୈବଂବଧୈରୁପ କରଣୈଃ ପୂଜନ୍ତଂ ଭବନ୍ତୁ, ଏବନ୍ମସ୍ପାନଂଦ ଫକ୍ଷିତ୍ରେନ ଦେଶିତଂ ମନ୍ତ୍ରଣ୍ୟାନଂ ଅପୁରଶବ୍ଦାନାଂ ମିଥ୍ୟାଦୃଷ୍ଟି ବୈମନ୍ତିକ ନାଂ ଯାନାଂ ଛର୍ଯ କାରଣାଂ ଅଲ୍ପାୟୂଷ୍କାଣାଂ ନରକତର୍ଯଗ୍ ଯୋନ ଯମଲୋକ ପରାୟଣାନାଂ ସତ୍ତ୍ୱାନାମାର୍ଥାୟ ଯ . ସାମାନଂଦ ଗୃହସ୍ଥାନାଂ ।

ଉପରୋକ୍ତ ବାଧିରେ ଯେଉଁ ମନ୍ତ୍ରାବଳୀ ବୌଦ୍ଧ-ଚୈତ୍ୟ ମ ନଙ୍କରେ ରଗ ଯାଉଥିଲା, କାଳକ୍ରମେ ସେଥିର ପ୍ରଭାବ ଭାର- ତୀୟ ତନ୍ତ୍ର ଯାନ ଏବଂ କାପାଳିକ ଧର୍ମରେ ପରିଣତ ହୋଇ ସେଥିରୁ "ଗୁଣିଆ" କର୍ମ ପ୍ରଚାର ଲାଭ କଲା । ଭୂତ-ପ୍ରେତାଦ ମାନଙ୍କୁ ବଶ କରି ଗୋଟିଏ ଅଦୃଶ୍ୟ ଶକ୍ତି ସାହାଯ୍ୟରେ ବିବିଧ ପ୍ରକାର ଅଦ୍ଭୁତ କର୍ମ କରିବା ପ୍ରଣାଳୀ ଭାରତରେ ଶିକ୍ଷା ଦିଆଯାଉଥିଲା । ଏଥିରୁ ଅବଶ୍ୟ କେତେକ ଅଂଶ ହସ୍ତକୌଶଳ ବା ମେସ୍‌ମେରି ଜମ୍‌ର ଅନ୍ତର୍ଗତ । କିନ୍ତୁ ସମସ୍ତ ନୁହେଁ । ସବୋପରି ଦେଖିବାକୁ ଗଲେ, ଗୋଟାଏ ଭୌତିକ ଶକ୍ତି ପୃଥିବୀରେ ଥିବା କଥା ଏକାବେଳକେ ଉଡ଼ାଇ ଦିଆଯାଇ ନ ପାରେ । କେଉଁ ଦୂର ଭବିଷ୍ୟତରେ ଯଦି ପ୍ରକୃତିରେ ଏହି ବୈଚିତ୍ର୍ୟ ଆବିଷ୍କୃତ ହେବା ସମ୍ଭାବନା ଥାଏ, ତେବେ ତାହା ଏ ଦେଶରେହିଁ ସମ୍ଭବ ବୋଲି

---

କୃପାମୟୀ ମୂଦୁଲି ତୁହି ଜଗନ୍ନାଥ ସେବକା
ସେବିବନୁ କୃପା ବହି ରହିଅଛୁ ଅନ୍ତର ଭାବୁକା ।

ମୋର ବିଶ୍ୱାସ । କାରଣ ଅଦ୍ୟାପି ବହୁ ତାନ୍ତ୍ରିକ ଗ୍ରନ୍ଥ ଓ ତାନ୍ତ୍ରିକ ଯୋଗୀ ଏ ଦେଶରେ ରହିଛନ୍ତି । ସେମାନଙ୍କ ସାହାଯ୍ୟରେ ପୃଥିବୀର ଗୋଟିଏ ରହସ୍ୟ ଉଦ୍‌ଘାଟନ କରିବାକୁ ସଂଘବଦ୍ଧ ଭାବେ ଚେଷ୍ଟା କରାଯାଇ ପାରେ । ଆଣବିକ ଶକ୍ତି ଯେପରି ପଦାର୍ଥ-ବିଜ୍ଞାନ ବାଦୀଙ୍କ ଆବିଷ୍କାର ମଧ୍ୟରେ ଆଜି ଶ୍ରେଷ୍ଠ ସ୍ଥାନ ଅଧିକାର କରିଛି, ସେପରି ଭୌତିକାତ୍ମା ଆବିଷ୍କାର ଫଳରେ ହୁଏତ ଆଉ ଏକ ଅଡ଼ୁଦ ଭୂତ କିମ୍ବା ପୃଥିବୀକୁ ଚମତ୍କୃତ କରିପାରେ ।



(୧୧)

**ଶ୍ରୀ ପ୍ରଶାନ୍ତ କୁମାର ମହାପାତ୍ର**

ମୋତେ ୫ ବର୍ଷ ହୋଇଥିବା ସମୟରେ ଆମ ଗ୍ରାମ ନିକଟରେ ଓ୍ୱାଉପଡ଼ା ନାମକ ଗୋଟିଏ ଗାଁର କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କ ଘରେ ବେତାଳ ମାନଙ୍କର ଆକ୍ରମଣ ବିଷୟରେ ଅନୁଭୂତ ଅଛି । ସେ ଲୋକଟି ବେତାଳ ଆକ୍ରମଣ ସହ୍ୟ କରି ନପାରି ଆମ ଘରେ କିଛି ଦିନ ପାଇଁ ଆଶ୍ରୟ ନେଇଥିଲା । କାରଣ ସେ ଆମର ସମ୍ପର୍କୀୟ ଥିଲା ।

---

ଲେଖା ହୋଇଗଲା ଏହି କଥା, ପ୍ରୀତିଥାଏ ଛପି ଛପିକା, ସକଳ ଅନ୍ତରେ ଧିଆନେ ଧରି କାହାକୁ କଏ କେତେବେଳେ ଆକର୍ଷଣ କରେ ।

ସେ ଯାହା କହୁଥିଲେ ତାର ସତ୍ୟତା ପ୍ରମାଣ ପାଇଁ ଲୋକ ପଠାଗଲାରୁ ଦେଖାଗଲା ଯେ ତାଙ୍କ ଘରେ ବେତାଳମାନେ ନାନା-ପ୍ରକାର ଅଘଟଣା ଘଟଣା ସୃଷ୍ଟି କରୁଥିଲେ । ଦିନେ ଦିନେ ଦେଖାଯାଏ ଘର ଭିତରେ କୌଣସି ଲୋକ ପରିସ୍ରା କରିଥାଏ ଯାହାର ପରିମାଣ କୌଣସି ମନୁଷ୍ୟ ପକ୍ଷରେ କରିବା ସମ୍ଭବ ନୁହେଁ । ସେଥିରେ ଗୋଡ଼ ଆଣ୍ଠୁ ପର୍ଯ୍ୟନ୍ତ ବୁଡ଼ିଯାଏ । ଘର ଅଗଣା ଭିତରେ ହାଡ଼ ଇତ୍ୟାଦି ପଡ଼ିଥାଏ । ଆଉ ଦିନେ ମଧ୍ୟ ରନ୍ଧା ହୋଇଥିବା ଖାଦ୍ୟ ପଦାର୍ଥ ଉଭେଇ ଯାଇ ସେଥିରେ ବିଷ୍ଠା ପୂର୍ଣ୍ଣ ହୋଇ ରହିଥାଏ । ଏମିତି ଅନେକ ଦିନ ପର୍ଯ୍ୟନ୍ତ ଚାଲିବା ପରେ ଆସ୍ତେ ଆସ୍ତେ ବନ୍ଦ ହୋଇ ଆସିଲା । ତ'ପାଇଁ କି ପ୍ରତିକାର ବ୍ୟବସ୍ଥା ହୋଇଥିଲା, ତାହା ମୋର ପ୍ରାୟ ମନେ ନାହିଁ ।



(୧୬)

### ଶ୍ରୀ ଗୋପାଳ ଚନ୍ଦ୍ର ଦାଶ

ଆଠବର୍ଷ ତଳର କଥା—ଗୋଟିଏ ବଣିଆ ଘର । କୌଣସି ଏକ ଲୋକ ସହିତ ବଣିଆଟିର ପୂର୍ବରୁ ମନୋମାଳିନ୍ୟ ଥିଲା । ତାହାର ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ଉକ୍ତ ଲୋକ ଜଣକ କୌଣସି ଗୁଣିଆର ବୋଧେ ଆଶ୍ରୟ ନେଇଥିଲା । ଫଳରେ ଗୁଣି

---

ଭୁଲିତ ମା ସେହିପରି, କଏ ନୁହେ ପ୍ରେମର ଭିକାରି
ଆକର୍ଷଣ ଏତେ ତାର, ମାଯାକର୍ଷଣ ଅନ୍ତର ଅନ୍ତର ।

ବିଦ୍ୟା ମାଧ୍ୟମରେ ପ୍ରତିଶୋଧ ନେବା ତା' ପକ୍ଷରେ ସହଜ ହୋଇଗଲା । ବଣିଆ ଯେତେବେଳେ ଖାଇବାକୁ ବସେ, ହାଡ଼, ମାଟି ପ୍ରଭୃତି ତା ଖାଦ୍ୟରେ ପଡ଼େ । ସାମୟିକ ଭାବରେ ହାଡ଼ ପ୍ରଭୃତି ମଧ୍ୟ ତାର ଘରେ ପଡ଼େ । ଏଥିରେ ବଣିଆ ଅତି ବିବ୍ରତ ହେଲା । କୌଣସି ଉପାୟରେ ଏହାର କୌଣସି ପ୍ରତିକାର କରି ପାରିଲା ନାହିଁ । ଅତି ଦୁଃଖିତ ମନରେ ଥରେ ମୋତେ (ଲେଖକଙ୍କୁ) ଓ ଆଉ କେତେଜଣ ଲୋକଙ୍କୁ ଦେଖାଇବା ଲାଗି ଡାକିଥିଲା । ଆମ୍ଭେମାନେ ଅତିଶୟ କୁତୂହଳୀ ହୋଇ ତା ସହିତ ଗଲୁ । ତାର ଘରେ ଅଳ୍ପ ସମୟ ବସିବା ପରେ କ୍ରମେ ହାଡ଼ ଓ ଗୁଣ୍ଡି ଗୁଣ୍ଡି ମାଟି ପଡ଼ିବାର ଆରମ୍ଭ ହେଲା । ଅବଶ୍ୟ ଖୁବ୍ ଅଳ୍ପ ସମୟ ମଧ୍ୟରେ ତାହା ବନ୍ଦ ହୋଇ ଯାଇଥିଲା । ତା ପରେ ବଣିଆ ତା'ର ସ୍ତ୍ରୀକୁ ଭାତ ଆଣିବାକୁ କହିଲା । ସ୍ତ୍ରୀ ଭାତ ବାଢ଼ି ଦେଲା । ବଣିଆ ଜଣକ ଆମମାନଙ୍କ ସମ୍ମୁଖରେ ଖାଇବାପାଇଁ ବସିବାମାତ୍ରେ କୁଆଡ଼ୁ ବିଷ୍ଠା ଗୁଡ଼ାଏ ଆସି ଖାଦ୍ୟରେ ପଡ଼ିଗଲା । ବଣିଆ ଆଉ ନ ଖାଇ ଆମ୍ଭମାନଙ୍କ ମୁହଁକୁ ଚାହିଁ ରହିଲା ଏବଂ ପୂର୍ବରୁ ଏଭଳି ହଇରାଣ ହେଉଥିବା ବିଷୟ କହିଲା । ଆମ୍ଭେମାନେ ଏ ସବୁ ଦେଖି ଘରକୁ ଫେରିଲୁ ଏବଂ ଅଦୃଶ୍ୟରେ ଏଭଳି ଏକ ପୈଶାଚିକ ବିଦ୍ୟା ଥିବା ଅବିଶ୍ୱାସ କରି ପାରିଲୁ ନାହିଁ । ତାର କିଛିଦିନ ପରେ ଏହି ବଣିଆଟି କେନ୍ଦ୍ରାପଡ଼ାର ପ୍ରସିଦ୍ଧ ପୈଶାଚିକ ବିଦ୍ୟା-ବିଶାରଦ ରତ୍ନେଶ୍ୱର ଗୁଡ଼ଙ୍ଗୀଙ୍କୁ ଡକାଇ ଥିଲା ଓ ତାଙ୍କର ମନ୍ତ୍ରଫଳରେ ଏହି ପୈଶାଚିକ ଅସୁବିଧାରୁ ମୁକ୍ତ ହୋଇଥିଲା ।

---

କୁହୁଡ଼ି ଘେରେ ସକାଳେ ଯେବେରେ
ମଧ୍ୟାହ୍ନେ ହୁଅଇ ବଡ଼ ଖରା—କୁହୁଡ଼ି ଖରା ଏହିପରି ଧରାପର ।

## (୧୩)

**ଶ୍ରୀ ସୋମନାଥ ରଥ**

ମୁଁ ବନାରସରେ ପଢ଼ୁଥିବା ସମୟରେ ଜଣେ ମିତ୍ରଙ୍କ ସହିତ କଥାବାର୍ତ୍ତା ପ୍ରସଙ୍ଗରେ ଭୂତପ୍ରେତର କଥା ପଡ଼ିଲା, ସେ ପ୍ରେତାତ୍ମାର ଅସ୍ତିତ୍ୱ ସମ୍ବନ୍ଧରେ ନିଜର ଅନେକ ଅନୁଭୂତି ବର୍ଣ୍ଣନା କଲେ। ମୁଁ ପ୍ରେତାତ୍ମାର ଅସ୍ତିତ୍ୱ ବିଷୟରେ ବିରୋଧ କରିବାରୁ ସେ କହିଲେ ଯଦି ତୁମେ ପ୍ରେତାତ୍ମା ବିଷୟରେ ପ୍ରତ୍ୟକ୍ଷ ଅନୁଭୂତି କରିବାକୁ ଚାହୁଁଛ ତେବେ ମୋ ଘରକୁ ଚାଲ, ସେଠାରେ ତୁମର ବିଶ୍ୱାସ ହେବ ଯେ ପ୍ରେତାତ୍ମା ଅଛି। ମୁଁ ତାଙ୍କର ଏପରି ଆମନ୍ତ୍ରଣକୁ ଆଗ୍ରହବଶତଃ ସ୍ୱୀକାର କରି ଗ୍ରୀଷ୍ମ ଛୁଟିଦିନ ପାଇଁ 'ଗୋରଖପୁର' ସହର ନିକଟ ତାଙ୍କ ଗ୍ରାମକୁ ଗଲି।

ସେ ମତେ ବାଟରେ କହିଲେ ମୋ ଘରେ ଯେଉଁ ପ୍ରେତାତ୍ମା ଅଛି ସେ ମୋର ପ୍ରଥମ ପତ୍ନୀ, ତାର ମରିବା ପରେ ସେ ପ୍ରେତାତ୍ମା ରୂପରେ ମୋର ଶୋଇବା ଘରେ ରହୁଅଛି, ସେହି ପ୍ରେତାତ୍ମାର ଅନୁମତିରୁ ମୁଁ ଦ୍ୱିତୀୟ ବିବାହ କରିଅଛି ଓ ସେହି ଦ୍ୱିତୀୟ ପତ୍ନୀ ଗର୍ଭରୁ ମୋର ବର୍ତ୍ତମାନ ଦୁଇଗୋଟି ସନ୍ତାନ ଅଛନ୍ତି, ସେହି ପ୍ରେତାତ୍ମା ମୋର ଓ ମୋ ସନ୍ତାନମାନଙ୍କର ତଥା ଆଗନ୍ତୁକ ବନ୍ଧୁ ବାନ୍ଧବଙ୍କର କୌଣସି ଅପକାର କରେ ନାହିଁ ବରଂ ଅନେକ ଉପକାର କରେ। କିନ୍ତୁ ମୋ ସହିତ ବିରୋଧ ଆଚରଣ କରୁଥିବା ଲୋକଙ୍କର ଅପକାର କରେ। ତାହା ତୁମେ ମୋ ଘରେ ପ୍ରତ୍ୟକ୍ଷରେ ଦେଖିବ।

---

ଆକାଶରେ ତୁମେ, ମମ ଅନ୍ତର ଆକାଶେ,
ତୁମେ ରହିଲ କି ସେଇଠି ? ଆଜି କି ଆସିବ ନାହିଁ ମୋ ମନମୂଳେ ?

ମୁଁ ସେହି ମିତ୍ରଙ୍କ ଘରକୁ ଯାଇ ଦେଖିଲି ଗୋଟିଏ ସ୍ୱତନ୍ତ୍ର କୋଠରୀ ପ୍ରେତାତ୍ମା ପାଇଁ ନିର୍ଦ୍ଦିଷ୍ଟ, ସେ କୋଠରୀରେ କିଛି ସାମାନ ପତ୍ର ନାହିଁ କେବଳ ଗୋଟିଏ ଖଟ ପଡ଼ିଅଛି, ସେହି କୋଠରୀ ମଧ୍ୟକୁ ସେ ଓ ତାଙ୍କ ପିଲିଙ୍କୁ ବାଦ ଦେଲେ ଅନ୍ୟ କେହି ଯାଆନ୍ତି ନାହିଁ, ଏପରି କି ତାଙ୍କ ସ୍ତ୍ରୀ ମଧ୍ୟ ଯାଆନ୍ତି ନାହିଁ, ପ୍ରତିଦିନ ଜଣକର ଖାଦ୍ୟ ସେହି ଘର ଦ୍ୱାରେ ତାଙ୍କ ସ୍ତ୍ରୀ ଅଥବା ପିଲେ ନେଇ ରଖି ଦିଅନ୍ତି, ୧୦ ମିନଟ୍ ପରେ ଦେଖାଯାଏ ଯେପରି ସେହି ଖାଦ୍ୟକୁ କେହି ଖାଇ ଦେଇ ଥାଳ ଗିନା ଦ୍ୱାରର ବାହାରେ ଥୋଇଦିଏ, ମୁଁ ଦିନେ ସେହି ଦ୍ୱାର ମୁହଁରେ ଠିଆ ହୋଇ ଦେଖିଲି ପିଲେ ଆଣି ଖାଇବା ଜିନିଷ ସେହି ଦ୍ୱାର ମୁହଁରେ ଥୋଇଲେ, ବଡ଼ ମା ଖାଅ ବୋଲି କହିଲେ, ହଠାତ୍ କୌଣସି ଅଦୃଶ୍ୟ ହାତ ଆସି ସେହି ଥାଳଟିକୁ ନେଇଗଲା, ସେହି ଘରର ଦ୍ୱାର ମୁହଁରେ ଚାହିଁଲି ସେ ଥାଳ କେଉଁଆଡ଼େ ଗଲା କିଛି କିଛି ଦେଖି ପାଇଲି ନାହିଁ, ୧୦ ମିନଟ୍ ପରେ ସେହି ଅଇଁଠା ଥାଳ ଆଣି ମୋର ଆଗରେ ଥୁଆ ହୋଇଗଲା । ଦିନେ ତାଙ୍କ ପୁଅ ଆସି କହିଲା 'ବାପା' ମୁଁ ମକା ଖାଇବ । ପଡ଼ିଶାଘରର ଦାମ ଭାଇ ଖାଉଅଛି, ଘରେ ମକା ନ ଥିଲା, ତେଣୁ ବାପା କହିଲେ ଯା 'ବଡ଼ମା'ଙ୍କୁ କହ ସେ ବିଲରୁ ଆଣିଦେବ, ସେ ପୁଅ ସେହି ପ୍ରେତାତ୍ମାର କୋଠରୀ ଦ୍ୱାରେ ଯାଇ କହିଲା, -'ବାପା କହିଛନ୍ତି ଆମକୁ ମକା ଦେ' । ଏପରି ୨ଥର କହିବାମାତ୍ରକେ ସେହି ପୁଅ ଆଗରେ ଦୁଇଟି ମକା ଆସି ପଡ଼ିଲା ଓ ସେ ତାକୁ ପୋଡ଼ି ଖାଇଲା ।

---

କୃଷ୍ଣପ୍ରିୟା ଆଗୋ ରାଧିକା, କୃଷ୍ଣପାଇଁ ପଡ଼ିଲ ତୁମେ ଏତେ ବାଧିକା
ତେଣୁ ଆମେ ସବୁ ହଟିଗଲୁଁ ତୁମେ ହେଲ ସାଧିକା ।

ତହିଁ ଆରଦିନ ମୁଁ ତାଙ୍କ ବିଲକୁ ଯାଇ କ୍ଷେତର ଏପଟେ ଓ ସେପଟେ ଥିବା ଦୁଇଗୋଟି ମକା ଗଛରେ ପେନ୍‌ସିଲ୍‌ରେ ନିଜ ନାମ ଲେଖି ଦେଇ ଆସିଲି ଓ ତାଙ୍କ ସଙ୍ଗେ ଘରକୁ ଆସି ମିଷ୍ଟଙ୍କୁ କହିଲି ତୁମ୍ଭେ ମୁଁ ନାମ ଲେଖି ଦେଇ ଆସିଥିବା ସେହି ଦୁଇଗୋଟି ମକାକୁ ଅଣାଇ ପାରିଲେ ମୁଁ ତୁମ୍ଭ ପ୍ରେତାତ୍ମାକୁ ବିଶ୍ୱାସ କରିବି, ସେ କହିଲା ମାତ୍ରକେ ନାମ ଲେଖା ହୋଇଥିବା ଦୁଇଟି ମକା ମୋ ଆଗରେ ଆସି ପଡ଼ିବାରୁ ମୁଁ ବିଶ୍ୱାସ କଲି ଯେ ପ୍ରେତାତ୍ମା ନିଶ୍ଚୟ ଅଛି ଓ ସେ ନିଜର ମନର ଅନୁମାନେ ଉପକାର ଓ ଅପକାର କରେ ।

ମୋର ଗୃହଜନ ପ୍ରତ୍ୟକ୍ଷ ଅନୁଭୂତିରୁ ଜାଣି ପାରିଲି ଉକ୍ତ ପ୍ରେତାତ୍ମା ନିଜର ସ୍ୱାମୀ ଓ ପିଲାଙ୍କ କଥାନୁସାରେ କାର୍ଯ୍ୟ କରେ କିନ୍ତୁ ସଉତୁଣୀର କାମ କରେ ନାହିଁ । ଉକ୍ତ ପ୍ରେତାତ୍ମାକୁ ଅନେକ-ଥର ଘରର ପ୍ରତ୍ୟେକ ଜାଗରେ ବୁଲୁଥିବାର ଦେଖିଛି, କିନ୍ତୁ ସଉତୁଣୀର ଶୋଇବା ଘରକୁ ଯାଏନାହିଁ, କିନ୍ତୁ ସଉତୁଣୀ ଯଦି ଉଚିତ ସମୟରେ ଖାଇବାପାଇଁ ନ ଦେଇଛି ତେବେ ତାକୁ ଆବେଶ ହୋଇ ମଧ୍ୟ କଥା କହେ, ସଉତୁଣୀ କୌଣସି ନବୀନ ବସ୍ତ୍ର ପିନ୍ଧିବା ପୂର୍ବରୁ ସେହି ବସ୍ତ୍ରକୁ ପ୍ରେତାତ୍ମାର ଘର ଦ୍ୱାର ପାଖରେ ରଖିଦିଏ, ୧୫ ମିନିଟ ପରେ ସେହି ଲୁଗା ଆସି ବହାରେ ଥୁଆ ହେଲେ ଯାଇ ସଉତୁଣୀ ସେହି ଲୁଗା ପିନ୍ଧେ । ସଉତୁଣୀ ଯେ କୌଣସି ନବୀନ ବସ୍ତ୍ର ବ୍ୟବହାର କରିବା ପୂର୍ବରୁ ପ୍ରେତାତ୍ମାକୁ ଅର୍ପଣ କରିବାକୁ ପଡ଼େ ।

---

ମୁଁ କି ସେହି ସ୍ୱାମୀ ? ଅନ୍ତରେ ବସି ରହିବି ମୁହିଁ
ସକଳେ ଆସିବେ ମୋ ପାଶକୁ, ମୁଁ ଯିବି ତାଙ୍କ ପାଖକୁ ଧାଇଁ ।

ଏପରି ପ୍ରତ୍ୟକ୍ଷ ଅନୁଭୂତିରୁ ମୋର ବିଶ୍ୱାସ ହେଲା ଯେ ସଂସାରରେ ଅବଶ୍ୟ ପ୍ରେତାତ୍ମା ଅଛି ।



(୧୪)

**ଶ୍ରୀ ଜଗନ୍ନାଥ ପାଢ଼ୀ**

ପ୍ରାୟ ପନ୍ଦର ବର୍ଷ ତଳର ଘଟଣା । ମୁଁ ଯାଇଥାଏ ମୋ ଶ୍ୱଶୁର ଘରକୁ । ଖରା ଦିନ ସନ୍ଧ୍ୟା ବେଳ । ମୋ ସ୍ତ୍ରୀ ଆସି କହିଲେ ଯେ "ବୋଉର ମୁଣ୍ଡ କିଅଣ ହେଉଛି ଚମକିଲା ଯେ କିଏ କଣକୁ ଆଡ଼କ ବସିଛି ଏବଂ କଥାବାର୍ତ୍ତା କରୁନାହିଁ ।" ଶ୍ୱଶୁର ମୋର ତାଙ୍କ ଦୁଆରୁ ଘର ଭିତରକୁ ଯାଇ ଫେରି ଆସି କହିଲେ ପିତ୍ତାଧିକ୍ୟ ଯୋଗୁଁ ସେପରି ହେଉଛି । ଦଶ ମିନିଟ ପରେ ପୁଣି ମୋ ସ୍ତ୍ରୀ ଆସି କହିଲେ ଯେ ବୋଉ କହୁଛି, "ତୋ ବୋଉ କିଏମ, ମୁଁ କାହିଁକି ତୋ ବୋଉ ହେବ, ମନ ହେଲା ତମ ଘରକୁ ଟିକିଏ ଆସିଛି ବୋଲି ତୋ ବୋଉ ହେବ ? ହଠାତ୍ ମୋ ଶଶୁରଙ୍କର ସନ୍ଦେହ ହେଲା ଯେ ବୋଧହୁଏ ଅତ୍ୟାଧିକ ପିତ୍ତର ପ୍ରକୋପ ଯୋଗୁଁ ଏପରି ପ୍ରଳାପ । ଶଶୁର କହିଲେ "ଯା ମୁଣ୍ଡରେ ଟିକିଏ ପାଣି ଢାଳି ଦେବୁ, ଥଣ୍ଡା ହୋଇଗଲେ ସବୁ ଠିକ ହୋଇଯିବ ।" ବାପାଙ୍କ ଆଦେଶ ପାଳନ କରି ଝିଅ ଫେରି ଆସି କହିଲେ ଯେ ବୋଉ କହୁଛି, "ମୁଁ କାହିଁକି ତୋ ବୋଉ ହେବ, ମୁଁ ତୋ ବୋଉ ନୁହେଁ" ଏବଂ କଟମଟ କରି

---

ସର୍ବ ଭିତରେ ଦେଖିବ ଭଲ, ମନ୍ଦଟି ନ ଦେଖ ଭୁଲେ,
ତେବେ ଯାଇ ମଣିଷ ପଣିଆ ଜାଣିବ ତୁମର, ନୋହିଲେ ଛୁ ଛୁ
ଲେଖା ତୁମ ଭାଲେ ।

ଗୃହୁଁଛୁ । ମୁଁ ଓ ମୋ ଶଶୁର ଘର ଭିତରକୁ ଗଲୁ । ମୋ ସ୍ତ୍ରୀ ଡାକିଲେ, "ବୋଉ, ବୋଉ" ଜବାବ ଆସିଲା "ମୁଁ କାହାଁକ ତୋ ବୋଉ ହେବି, ମୁଁ ତୋ ବୋଉ ନୁହେଁ ।" ଆମେ ଅବାକ । ମୋ ଶଶୁର ସନ୍ଦେହ କଲେ ଭୂତ ବା ଡାଆଣି ବୋଧହୁଏ ଆସିଛି । ଗାଁରେ ଜଣେ ବାବାଜି ଥିଲେ. ସେ ଜଣେ ହନୁମାନ ସାଧକ । ତାଙ୍କୁ ଡକାଗଲା । ସେ ଆସି ଧୂପ ଦେଲେ ଏବଂ କିଛି ମନ୍ତ୍ର ପାଠ କରି ପଚାରିଲେ "ତୁ କିଏ ଏବଂ କାହିଁକି ଆସିଛୁ," ଜବାବ ନାହିଁ । ଗୃାଉଳ ଦାନାଟି ମନ୍ତ୍ର ପାଠ କରି ମୁଣ୍ଡ ଉପରେ ପକାଇ ଦେବାକ୍ଷଣି ଉତ୍ତର ଆସିଲା "ଗୁଣ୍ଡି ଗୁଡ଼ା ମତେ କାହିଁକି ହଇରାଣ କରୁଛ, ନାନା ବାଡ଼କୁ ଯାଉଥିଲା, ମୋର ମନ ହେଲା ମୁଁ ଟିକିଏ ତା ଘରକୁ ଗୃଲି ଆସିଲି ।" ସେତେବେଳେ ଜଣାଗଲା ଯେ ମୋ ଶାଶୁଙ୍କର ସାନ ଭଉଣୀ ଯେ କି ସେହି ଗ୍ରାମରେ ବିବାହ କରିଥିଲେ, ଦୁଇଟି ସନ୍ତାନ ଗୁଡ଼ା ଇହଧାମ ତ୍ୟାଗ କରିଛନ୍ତି ଏବଂ ଏହା ତାଙ୍କରି ପ୍ରେତାତ୍ମା । ମୋର ସନ୍ଦେହ ହେଲା । ମୁଁ ଶାଶୁଙ୍କ ସାମନାକୁ ଯାଇ ପଚାରିଲି, ମୁଁ କିଏ ? ପ୍ରଶ୍ନ ପଚାରିବା ସଙ୍ଗେ ସଙ୍ଗେ ମୁଣ୍ଡରେ ଓଢ଼ଣା ଟାଣି, ଦେବ ନମ୍ର ସ୍ୱରରେ କହିଲେ "ଝିଅଣ ଯୋଇଁ" । ମୁଁ ତାଙ୍କୁ ଥରକପାଇଁ ମଧ୍ୟ ଦେଖିନାହିଁ । ଅଥଚ ତାଙ୍କର ପ୍ରେତାତ୍ମା ମୋ ପ୍ରଶ୍ନର ସଠିକ ଜବାବ ଦେଇ ପାରିଲା । ସେ ପ୍ରେତାତ୍ମା ଯେ ମୋ ଶାଶୁଙ୍କ ସାନ ଭଉଣି ଏଥିରେ ସନ୍ଦେହ କରିବାର ଅବକାଶ ରହିଲା ନାହିଁ । ମୁଁ କେବଳ ସ୍ତମ୍ଭିଭୂତ ହୋଇ ଠିଆ ହୋଇଥାଏ ।

---

ଯାହାରେ ଭଲ ପାଏଁ ମୁଁ, ତାହାର କଥା ଲେଖା ହୋଇ ନାହିଁ  
ଅନବଦ୍ୟ ସେ

ତେଣୁ କି ସେ ବଦ୍ୟ ନୁହଇ ?

ତା ପରେ ମୋ ଶଶୁର ପଚାରିଲେ ଯେ ଆମ ଘରକୁ କାହିଁକି ଆସିଛ ? ଭୂତ ମଲୁ ଗଲୁ, ପୁଣି ଭୂତ ହୋଇ ଆସି ଲୋକଙ୍କ ଏପରି ହଇରାଣ କରି ନାଗତ ହେବାରେ ଲାଭ କଅଣ ? ଜବାବ ମିଳିଲା ମୁଁ କାହିଁକି ଘରକୁ ହଇରାଣ କରିବି । ମୋ ନାନ ଦେବାକୁ ମୁଁ ଆସିଛି । ତମର କଅଣ ଗଲା ।" ମୋ ଶଶୁର କହିଲେ "ମୋ ଘରକୁ କାହିଁକି ଆସିଛୁ, ଶୀଘ୍ର ଚାଲୁ" । ସେଥିରେ ଭୂତ ରାଗିଯାଇ କହିଲା

"ତମେ କାହିଁକି ମୋ ଗାଈ ଆଣିଛ ?
ମୋ ପିଲେ ଖାଇବାକୁ ପାଉ ନାହାନ୍ତି ।
ତମେ ଦୁଧ ଖାଇବ । ଖାଇଲ ନା ?
ଆଉ ଖାଇବ ଯେ" ?

ଏହାର ତାତ୍ପର୍ଯ୍ୟ କିଛି ବୁଝି ନପାରି ଶଶୁରଙ୍କୁ ପଚାରିଲି ଯେ କଥା କଅଣ । ଶଶୁର କହିଲେ, ତୋ ଗାଈତ ମୁଁ ଆଣି ନାହିଁ, ତୋ ସ୍ୱାମୀ କହିଲେ ଯେ ସେ ଗାଈର ଖବର ବୁଝି ପାରୁ ନାହାନ୍ତି ଏବଂ ମତେ ଅନୁରୋଧ କଲେ ଗାଈଟିକୁ ଘରେ ରଖିବାକୁ ଏବଂ ତାଙ୍କର ଅନୁରୋଧ କ୍ରମେ ଗାଈଟିକୁ ମୁଁ ରଖିଛି । ଭୂତ କହିଲା "ହଉ, ଦୁଧ ଖାଇବ ଯେ, ଖାଉଥା" । ମୁଁ କିଛି ବୁଝି ନ ପାରି ଶଶୁରଙ୍କ ଆଡ଼େ ଚାହିଁଲି । ସେ କହିଲେ ଯେ ଗତ ଦୁଇଦିନ ହେବ ଗାଈର ଶରୀରରେ ଗୋଟିଏ ଫୁଲା ଚଢ଼ି, ଘା ହୋଇଛି ଏଣୁ ଦୁଧ ଦୁହାଁ ଯାଉ ନାହିଁ । ଭୂତକୁ ଲକ୍ଷ କରି ଶଶୁର କହିଲେ "ତୋ ଗାଈକୁ ନେଇ ତମ ଘରେ ଗୁହାଳ ଦେଇଛି । ମୁଁ ତ ଦୁଧ ଖାଇବାକୁ ମାଗି ଆଣି ନଥିଲି । ତା ପରେ ବାବାଜି ପଚାରିଲେ ଆଉ କଅଣ କହିବାକୁ ଅଛି, ନା

ଆନନ୍ଦବର୍ଦ୍ଧନ ତୁମେ ସବୁ ଯେଉଁମାନେ
ତୁମପାଇଁ ଜୀବନ ମୋର ଧନ୍ୟ ମଣେଁ ।

ଗ୍ଭଲଯିବୁ । ଭୂତ କହିଲା "ମୋର ୫ ୨୪—ଲୋକ ଧାର ନେଇ-ଥିଲା, ମୁଁ ମରିଗଲି ବୋଲି ଫେରସ୍ତ ଦେଉ ନାହିଁ । ତାକୁ କହିବ ଶୀଘ୍ର ମୋ ପିଲାଙ୍କୁ ଦେଇଦେବ । ଆଉ ଲୋକ ମୋଠାରୁ ଗୃଞ୍ଜଲ ଧାର ନେଇଥିଲା, ସେ କାହିଁକି ଫେରସ୍ତ ନେଉ ନାହିଁ । ମୁଁ ମରିଗଲି ବୋଲି ମୋର ସବୁ ଖାଇବାକୁ ବସିଛନ୍ତି । ମୁଁ ଯିନା ମରିଗଲି, ମୋ ପିଲେତ ଅଛନ୍ତି । ମୋ ପିଲାଙ୍କୁ ଯଦି ନ ଦେବେ ମୁଁ ତାଙ୍କ ଖବର ବୁଝିବି ।" ସଙ୍ଗେ ସଙ୍ଗେ ଖବର ନେବାରୁ ଜଣାଗଲା ଯେ ଭୂତ କହିବା କଥା ଠିକ୍ ଏବଂ ଭୂତକୁ କୁହାଗଲା ଯେ ତାଠାରୁ ନେଇଥିବା ଧାର ୫ଙ୍କା ଓ ଗୃଞ୍ଜଲ ଫେରସ୍ତ ଦିଆଯିବ । ତାପରେ ବାବାଜି ପଚାରିଲେ ଆଉ କଅଣ ଗ୍ଭହୁଁଛୁ । ଭୂତ କହିଲା "ଆଉ କିଛି ନାହିଁ ଗ୍ଭଲିଯିବି । ନାନି ଘରେ ଟିକିଏ ପଣା ପିଇ କରି ଯିବିଘରି । ପଣା ତିଆରି ହୋଇ ଦିଆଗଲା ଏବଂ ପଣାଟିକ ପିଇଦେବାକ୍ଷଣି ଶାଶୁ ମୋର ତଳେ କଚାଡ଼ି ହୋଇ ପଡ଼ିଗଲେ ଏବଂ ବେହୋସ । କିଛି ସମୟ ଥଣ୍ଡାପାଣି ମୁହଁରେ ଦେବା ପରେ ହୋସ ଆସିଲା ଏବଂ କହିଲେ ଦେହ ଭଲ ଲାଗୁନାହିଁ, ଗୋଡ଼ ହାତ ବନ୍ଧା ହେଉଛି ଏବଂ ଶୋଇ ପଡ଼ିବ ।

ମୃତ୍ୟୁ ପରେ ମଧ୍ୟ ମାର ସ୍ନେହ ଓ ମମତା ଯେ ତାର ସନ୍ତାନ ପ୍ରତି ରହିଥାଏ, ଏ ଘଟଣା ତାର ଜ୍ୱଳନ୍ତ ନିଦର୍ଶନ । ମୃତ୍ୟୁ ପରେ ମଧ୍ୟ ମନୁଷ୍ୟର ସ୍ମୃତି ଶକ୍ତି ଯେ ବିଲୋପ ହୁଏନା, ଏକଥା ସେହି ଦିନଠାରୁ ମୋର ଦୃଢ଼ ଧାରଣା ହେଲା । ଇହଲୋକ ଓ ପରଲୋକର ସମ୍ପର୍କ ଯେ କେଡ଼େ ଘନିଷ୍ଠ ତା ଏଥିରୁ ସହଜରେ ଅନୁମେୟ ।

---

ଦିବସର ସାଥୀ, ପରାଣର ପ୍ରୀତି ତୁମ ସୁନ୍ଦର
ପୁଲକ ଜଗାଅ ପ୍ରାଣେ ନ ଥାଅ ଦେବେ ମୋ ପାଶର ।

ଇହଲୋକର ମମତା, ସ୍ନେହ, ପ୍ରୀତି, ଶତ୍ରୁତା, ଭାବ ଓ ଅଭାବ, ଏ ସମସ୍ତ ପରଲୋକରେ ମଧ୍ୟ ପୂର୍ଣ୍ଣମାତ୍ରାରେ ବିଦ୍ୟମାନ । ମନେ ହୁଏ ଏ ଦୁଇଲୋକରେ ପ୍ରଭେଦ କେବଳ ରକ୍ତ ମାଂସର ଶରୀର ନେଇ । ମର୍ତ୍ତ୍ୟଲୋକରେ ଅର୍ଥାତ୍ ସ୍ଥୂଳ ଜଗତରେ ସ୍ଥୂଳ ଶରୀର ଜନ୍ମଠାରୁ ମୃତ୍ୟୁ (ଦେହାନ୍ତ) ପର୍ଯ୍ୟନ୍ତ ଆତ୍ମାର (ଜୀବଶକ୍ତିର) ବାହନ ମାତ୍ର । ସ୍ଥୂଳ ଶରୀରର ବିନାଶରେ ଯେ "ମନୁଷ୍ୟ"ର ସବୁ ଶେଷ ହେଲା, ଏପରି ଧାରଣା ଭ୍ରାନ୍ତ । ନରଲୋକ ସହିତ ପରଲୋକର ସମ୍ପର୍କ ଅବିଚ୍ଛେଦ୍ୟ । ଅନେକ ସିଦ୍ଧ ପୁରୁଷ ନର ଶରୀରରେ ଅବସ୍ଥାନ କରି ମଧ୍ୟ ପର-ଲୋକ ସହିତ ସମ୍ପର୍କ ସ୍ଥାପନ କରି ପାରିଛନ୍ତି । ତଥାପି ଏ ସମ୍ପର୍କ ଆହୁରି ଦୃଢ଼ ପ୍ରତିଷ୍ଠା କରିବା ନିତାନ୍ତ ପ୍ରୟୋଜନ । ଏ ଦିଗରେ ଜନସାଧାରଣଙ୍କର ଆଗ୍ରହ ବୃଦ୍ଧି ପାଇଲେ ପ୍ରଭୂତ ମଙ୍ଗଳ ସାଧନ ହୋଇ ପାରନ୍ତା ।



---

## ପ୍ରେତଲୋକର କଥା

ଯମ ନଚିକେତା ସମ୍ବାଦରେ ଏ ବିଷୟ ଚର୍ଚ୍ଚା କରା ହୋଇଛି । ଗରୁଡ଼ ପୁରାଣରେ ପରଲୋକ ତତ୍ତ୍ୱ କଥା ବିଶେଷ ଭାବରେ ଆଲୋ-ଚନା କରା ଯାଇଛି । ଅଷ୍ଟାଙ୍ଗ ଆୟୁର୍ବେଦରେ ଭୂତବିଦ୍ୟା ଗୋଟିଏ ଅଙ୍ଗ । ଭୂତମାନଙ୍କ ଭିତରେ ବ୍ରହ୍ମରାକ୍ଷସ ଅତି ଦୁଷ୍ଟ ।

( ୧୫ )

## ଡାକ୍ତର ବନବିହାରୀ ପଟ୍ଟନାୟକଙ୍କ ଅଭିଜ୍ଞତା

ମୁଁ ଯେତେବେଳେ ଘଣ୍ଟା ମନ୍ଦରରେ ଥାଏ—ଯେଉଁଠି ବର୍ତ୍ତମାନ "କୃଷକ" ଅଫିସ ହୋଇଛି । ଦୋତାଲା ଘରଟିଏ । ହରମୋହନ ପଟ୍ଟନାୟକ ସେଠି ରହୁଥିଲେ, ସେ ପ୍ରଥମ ନାସ୍ତିକ ଥିଲେ । ପରେ ଘଟଣା କ୍ରମେ ଆସ୍ତିକ ହେଲେ ।

ଅଷ୍ଟଘରର କଥା ଯେ ପ୍ରେତ ପୁରୁଷଟି ହରମୋହନ ପଟ୍ଟନାୟକଙ୍କୁ ତାଙ୍କ ଇଚ୍ଛା ଅନୁଯାୟୀ ଚିତଳମାଛ ପେଟି ଆଣିଦେଲା । ଏହାପରେ ମହାପ୍ରସାଦ ମଧ୍ୟ ଆଣି ଦିଏ । ସେ ସ୍ୱୀଟି ହଳଦିଆ ଶାଢ଼ୀପିନ୍ଧି ଥାଏ ।

ମୁଁ ଦିନେ ସେହିଘରେ—ବାହାରଘରେ ବସି ଲେଖୁଛି । ପିଲାମାନେ ବୁଲି ଯାଇଛନ୍ତି । ପିଲାମାନେ ଫେରି ଆସିଲାବେଳକୁ ହଠାତ୍ ସବୁ ଝରକା ଏକାଥରେ ପିଟିଗଲା ଅଥଚ ଘରେ କେହି ନାହାନ୍ତି ।

ଆଉ ଗୋଟିଏ ଘଟଣା—ଚମ୍ପାରଣରେ ଥାଏ । ନାରକଟିଆ ଗଞ୍ଜ—ଶିକାରପୁର ଥାନା । ସେଠାକାର ଜମିଦାର ଭଗବତୀବାବୁ କଂଗ୍ରେସ କର୍ମୀ । ଦଶହରା ସମୟ । ସେ ମୋତେ ଖାଇବାକୁ ଡାକନ୍ତି । ଶିକାରପୁରଠାରୁ ନାରକଟିଆ ଗ୍ରାମ ମାଇଲ । ଖୁବ୍ ଜାଡ଼ ପଡ଼ୁଛି । ଭକନାହୋସ୍ଵ ରେଲ୍‌ୱେ ଲାଇନ କାଟ ହେଇ ମୁଁ

---

ଫୁଲ ଫୁଟିଲେ ଭ୍ରମର ଆସେ, ଯୁବା ଯୁବତୀର ପ୍ରାଣ ମିଶେ,
ତାକୁ ବାରିବ କିଏ ମନା ? ପ୍ରକୃତ ଶୁଣି ହସେ ।

ଓ ଅନୁଚରେ ନେଇ ଜମିଦାର ଘରକୁ ଯାଉଥିଲୁ । ବାଟରେ ଗୋଟିଏ ଜଙ୍ଗଲ—ଶାଳବଣ ପଡ଼େ । ହଠାତ୍ ଜଣାଗଲା ଯେ ଶୁଖିଲା ପତ୍ର ଉପର ମାଡ଼ି ଆସୁଛି । ଆଉ ଟିକିଏ ଧଳା ପୋଷାକ ପିନ୍ଧି ଧଳା ଘୋଡ଼ାରେ ସଉବାର ଡାହାଣ ପାଖକୁ ଛୁଟିଲା । ଗୋଟିଏ ଭୟଙ୍କର ଶବ୍ଦ ହେଲା । ସେତେବେଳେ ଆମେ ସାଇକେଲ ଛାଡ଼ି ଜୋରରେ ଗୁଡ଼ାଇଲୁ—ସେହି ମୂର୍ତ୍ତିକୁ ଧରିବା ପାଇଁ । ଦୂରତ୍ୱ ବେଶୀ ନଥାଏ । କିନ୍ତୁ ସେ ବି ଅନ୍ତକୁ ଫେରି ଅମୃତୋହାକୁ ଚାଲିଗଲା । ଆଉ ଆମେ ତାକୁ ଧରି ପାରିଲୁ ନାହିଁ । ଜମିଦାରଙ୍କୁ କହିବାରୁ ସେ କହିଲେ ଯେ ସେଠି ଗୋଟିଏ ଦୁଷ୍ଟ ସଇତାନ ଅଛି । ଆଉ ଗୋଟିଏ ଭଲ 'ସ୍ପିରିଟ' ମଧ୍ୟ ଅଛି । ଯାହାଙ୍କୁ ଅନେକମାନେ ରକ୍ଷା ପାଉଥିଲେ । ସେହି ସ୍ପିରିଟ ଆପଣମାନଙ୍କୁ ରକ୍ଷା କଲା ।

—:o:—

( ୧୭ )

## ଡାକ୍ତର ଶ୍ରୀ ବାଲମୁକୁନ୍ଦ ନାୟକଙ୍କ ଅଭିଜ୍ଞତା—

ମୁଁ ସେତେବେଳେ ପୂର୍ଣ୍ଣିୟା ଜିଲ୍ଲାରେ ଫରବିସ୍‌ଗଞ୍ଜ (ବିହାର)ରେ କାମ କରୁଥାଏ । ମୋ ସାଙ୍ଗରେ ହରିବନ୍ଧୁ ମହାନ୍ତି ବୋଲି ଜଣେ ସାହାଯ୍ୟକାରୀ ଥାଏ । ସେ ବର୍ତ୍ତମାନ ଟାଟାରେ ଫୋରମ୍ୟାନ୍ ନା କ'ଣ ହୋଇଛନ୍ତି । ୧୯୬୫ ସାଲର କଥା । ହରିବନ୍ଧୁ

---

ଭସ୍ମୀଭୂତ ଭସ୍ମୀକୃତ ଭସ୍ମ ହେଲା ସବୁ
ଆଉ ମୋର କଣ ବାକି ହେବ ନାହିଁ ।

ଘରେ ମାଟି ଢେଲା ପଡ଼ିଲା । ମୁଁ ତାଙ୍କୁ ଶେଷରେ ମୋ ଘରକୁ ଆଣିଲି । ମୋ ଘରେ ମଧ୍ୟ ସେହିପରି ମାଟି ଢେଲା ପଡ଼ିଲା—ଏପରିକି ମଶାରୀ ଉପରେ ମାଟିର ଟିକିଏ ଟିକିଏ ଟୁକୁରା ପଡ଼ିଥାଏ । ଦିନେ ସକାଳେ ଖାଇବାରେ ଦେଖିଲି ମଧ୍ୟାହ୍ନଭୋଗରେ ଶୁଖିଲା ଢେଲା ପଡ଼ିଛି । ମାସେ ପର୍ଯ୍ୟନ୍ତ ଏହିପରି ଚାଲିଲା । ଶେଷରେ ଏପରି ହେଲା ଯେ ରନ୍ଧା ତରକାରୀ ତୁରନ୍ତ କୁଆଡେ ଉଭେଇ ଗଲା । ଭାତ, ହାଣ୍ଡିରେ ଫୁଟୁଛି—ଅଥଚ ଦେଖାଗଲା ହାଣ୍ଡିରୁ ଭାତ କିଏ କାଢ଼ି ନେଉଛି—ଅନ୍ୟ ବାସନରେ କିଏ ଖାଇ ପିଇ ଚାଲି ଯାଉଛି ।

ବକ୍ତିଆରପୁରର ଜଣେ ପଣ୍ଡିତ ସେ କବିରାଜୀ ଜାଣନ୍ତି—ମନ୍ତ୍ର ବିଦ୍ୟା ମଧ୍ୟ ଜାଣନ୍ତି । ତାଙ୍କୁ ଡକା ହେଲା । ଫଳ ହେଲା ତାଙ୍କ ଉପରେ ବଡ଼ ବଡ଼ ଢେଲା ପଡ଼ିଲା । ମୋ ଉପରେ ଟୁର୍ ଟୁରିଆ ଢେଲା ପଡ଼ିଲା । ହୋମ କରାଗଲା । ହୋମ ବେଳେ ଗୋଟିଏ ମୂର୍ତ୍ତି ଦେଖାଗଲା ।

ଏହିପରି ଦେଖି ଦେଖି ଦିନେ ରୋଷେଇଘରେ ନିଆଁ ଲାଗି-ଗଲା । ପଣ୍ଡିତଙ୍କୁ ଭୂତ ଧମକି ଦେଲା । ତା'ପରେ ମୋ ଗଛ ବରାବର ହଲିବାକୁ ଲାଗିଲା । ରାମକୃଷ୍ଣ ମିଶନର ଲୋକେ ସେଠି କାମ କରୁ-ଥାନ୍ତି । ସେମାନଙ୍କୁ କହିବାରୁ ସେମାନେ କହିଲେ—'ଏ ସବୁ ବିଶ୍ୱାସ୍ୟ ।"

ପ୍ରାୟ ଏକମାସ ପର୍ଯ୍ୟନ୍ତ ଏହିଭଳି ଚାଲିଲା ।

---

ଏତୁ ଘଟଣା, ଏହି ଘଟଣା ଟାଣିଲା ମୋତେ

ସତରଞ୍ଜନୀ ଯେବେ ହସି କହିଲା, ଆମ ଘରକୁ ଥରେ ଆସ ସତେ ।

ଆଉ ଗୋଟିଏ ଅଭିଜ୍ଞତା ପୁରୀରେ ଘୋଡାଗାଡ଼ିରେ ଯାଉଛୁ । ରାମଚଣ୍ଡୀ ପାଖରେ କିଏ ଜୋରରେ 'ହେଇ ହେଇ' କରି ଡାକିଲା । ଗାଡ଼ି ଅଟକାଇ ଦିଆଗଲା । କିଛି ନାହିଁ । ତା' ପରେ ଗାଡ଼ି ଚାଲିଲା ବେଳକୁ ପୁଣି 'ହେଇ---ହେଇ' ଶବ୍ଦ ହେଲା । ଏହି ଘଟଣାଟି ରାଜକିଶୋର ମହାପାତ୍ରଙ୍କ ଘରେ ଯେତେବେଳେ ତାଙ୍କ ଝିଅ ବେଶ୍ୟାମ ପଢ଼ୁଥାନ୍ତି । ଶେଷରେ ସେ ଝିଅଟି ମରିଗଲା ।

—:O:—

( ୧୬ )

## ଶ୍ରୀ ନିମାଇଚରଣ ସେନଗୁପ୍ତ (ହାଉବାବୁ) ଙ୍କ ଅଭିଜ୍ଞତା—

ଆମ ବାହାର ଘରେ ବସା ଉଠା କରୁ । ଦିନେ ଦେଖିଲୁ ବେଳକୁ ସେ ଘରେ ଗୋଟାଏ ଗୁହଲେଣ୍ଡ୍ର ପଡ଼ିଛି । ଆମେ ଭାବିଲୁ ବୋଧହୁଏ କୁକୁର ହଗି ଦେଇ ଯାଇଛି ।

କିନ୍ତୁ ଦୁଇ ତିନିଦିନ ଏହିପରି ଦେଖାଗଲାରୁ ଆମେ ଅସ୍ଥିର ହେଲୁ । ପଣ୍ଡିତେ କହିଲେ—'କିଏ ବୋଧହୁଏ ଅଦରବତରେ ହଗି ଦେଉଛି' । ମେଟହେନ୍ତର ଆଣି ସଫା କରାଇଲୁ ।

---

ପଙ୍କଜିନୀ, ସରୋଜିନୀ, ଆଉ କାଦମ୍ବିନୀ ଏହିପରି ତିନି ଭଉଣୀ କ୍ୟାପିଟେଲରେ ରହିଛନ୍ତି ସୁଖରେ ବାମା ମା'ଙ୍କୁ ଭେଜି ।

ଏମିତି ପାଞ୍ଚସାତ ଦିନ ହେଲା ପରେ ଦିନେ ଦେଖିଲି ଟେବଲକୁ ଆମ ବଡ଼ ଘର ମଝିରେ ଗୋଟାଏ ଗୁହ ଲେଣ୍ଡି । କଟକରେ ଜଣେ ଗୁଣୀ ଥାଏ । ତାଙ୍କୁ ଡକାଇଲୁ । କିନ୍ତୁ କିଛି ବନ୍ଦ ହେଲା ନାହିଁ । ଏହିଭଳି ମାସେ ଖଣ୍ଡେ ଗୁହ ପଡ଼ିଲା ।

କ୍ରମେ ଦେଖାଗଲା ଯେ ଭଣଜା ଭାଣେଜୀଙ୍କ ଖାଇବା ଥାଳିରେ ବିଷ୍ଠା ପଡ଼ୁଛି । ଏମିତି ହେଲା ଯେ ସେମାନେ ଖାଇ ପାରିଲେ ନାହିଁ । ଭାଣେଜୀ ମୁଣ୍ଡରେ ସ୍କୁଲରେ ଗୁହ ପଡ଼ିଲା । ସେ ମୁଣ୍ଡ ଧୋଇ ପକାଏ । ଶେଷକୁ ଲାଜରେ ସେ ସ୍କୁଲକୁ ଗଲା ନାହିଁ ।

ଆମେ ଲକ୍ଷ୍ୟ କଲୁ ଯେ ବିଷ୍ଠା ପଡ଼ିବାଟା ସୀମା ବଦ୍ଧ ରହିଲା ଙ୍ଗେଟ ଭଣଜା ଭାଣେଜୀଙ୍କ ଠାରେ । ମୋର ଦୁଇଜଣ ବୁଢ଼ୀ ମାଉସୀଙ୍କ ଗୋଡରେ କିଏ ଗେଲରେ ଗୃପ୍ତଭା ମାରେ—ବାଲ୍ଟି ପକାଇ ଦିଏ ।

ଦିନେ ହଠାତ୍ ଆମ ଅଳଗୁଣ୍ଡିରେ ନିଆଁ ଲାଗିଗଲା । ଖବର ପାଇ ଆସି ଦେଖେ ଯେ ସବୁ ଜଳିଗଲା । ଏମିତି ଦୁଇଥର ହେଲା ।

ଦିନେ ଜଣେ କହିଲେ—ଇଏ ତ କେବଳ ଦଗୁଛି—ମୂଳୁ ନାହିଁ । ତା' ପରଦିନ ଦେଖିଲି ଟେବଲକୁ ଲେଣ୍ଡି ପାଖରେ ଗୁଡାଏ ମୁତିଛି । ଏମିତି ଦୁଇଗୁଣ ଥର ମୁତିଲା ।

ତା'ପରେ ପଡ଼ିଲା ଠେକା । ପୁଲିସ କନ୍‌ଷ୍ଟେବଲ୍ ଆସି ଜଗିଲେ । କିନ୍ତୁ କାହାରକୁ ଧରିହେଲା ନାହିଁ ।

---

ଶୀତଳ ତୁହି, ଶୀତଳକୁ ରକ୍ଷା କର ଆଜୀବନ ତୁହି
ମା ଶୀତଳା! ଶକ୍ତି ଜନ୍ମଦାନ୍ ତାର ଅଶ୍ରୁ ନେଇଛି ସେହି ।

ସ୍ୱର୍ଗୀୟ ଗୋପାଳ ପ୍ରହରାଜ ଓ ଜଣକା ଟିକାୟତ ( ବର୍ତ୍ତମାନ ମନ୍ତ୍ରୀ ହୋଇଛନ୍ତି ) ଆସିଲେ ଦେଖିବାକୁ । ସ୍ୱର୍ଗୀୟ ପଣ୍ଡିତ ଅତୁଳ ମିଶ୍ରଙ୍କର ତ ପୂର୍ବରୁ ବିଶ୍ୱାସ ହେଉ ନଥିଲା । ତାଙ୍କର କ୍ରମେ ବିଶ୍ୱାସ ହେଲା ।

ଆଉ ଜଣେ ବୃଦ୍ଧ ଅନ୍ଧ ଘରେ ଥିଲେ । ଏନେ ତାଙ୍କ ଭାତ ଅଟିତାକୁ ଚୁଲିରୁ କାଢ଼ି ନେଇଗଲା । ଦେଖିଲା ବେଳକୁ ସେ ଅଟି-ତାଟି କୂଅ ଭିତରେ ପଡ଼ିଛି । ସେ ଥରେ ଭାତ ବାଢ଼ିଲା ବେଳକୁ ସେଥିରେ ବିଷ୍ଠା ।

ଭଣଜା ଭଣେଜୀଙ୍କୁ ମୁଢ଼ିଅ ଦୋକାନକୁ ନେଇଗଲି । ବରଗୁଡ଼ିକ ହେଉଛି ସେମାନଙ୍କୁ କିଣି ଦେଲେ ଖୁଆଇବ । ସେଠି କଳଶିଅ ଠୋଲା ତାଙ୍କ ହାତକୁ ଦେଲାବେଳକୁ ସେଥିରେ ବିଷ୍ଠା ! ସେମାନେ କ୍ରମେ ଶୁଖିଗଲେ ।

ଉପାୟ ନପାଇ ଧବଳେଶ୍ୱର ନେଇଗଲି । ସେଠି ଅନ୍ନ ବିଷ୍ଠା ପଡ଼ିଲା ନାହିଁ ।

ପୁରୀ ନେଇପିବାକୁ ବାହାରିଲି । ନେଲାବେଳେ କଟକ ଷ୍ଟେସନରେ ଗୁହ ପଡ଼ିଥିଲା । ପୁରୀରେ ପଡ଼ି ନାହିଁ ।

---

ଜନମ ଦେଲି, ଗୋଟିଏ ଗୋଟିଏ କରି, ତନି ଗ୍ରହ ହିଁ ଅ

କେଉଁ ବନ୍ଧରେ ନାହିଁ, ସବୁ ଗୁଲିଗଲେ ଦୋଖା ଦେଇ-ଏ କି ମୋହ ?

ଜଣେ କହିଲେ—'ପାଟିକରି କିଛି ନକହି ଲେଖି ଦିଅ ଭଟିଙ୍ଗା ଭାଣିଜାଙ୍କୁ ଯାହା କହିବାକୁ ହେବ ।' ସେଇଥି କାଗଜ ଦେଖିଲି ଆଉ କିଛି ହେଉ ନାହିଁ । କିନ୍ତୁ ଖାଇବା ଶିଙ୍ଗରେ ବସ୍ତା ପଢ଼ିବା ବନ୍ଦ ହେଇ ନାହିଁ ।

କହୁ ଗୁଣୀ ଆଣିଛି—ପର୍ଗୁଣ ପାଠିଏ ହେବେ । ଢେଙ୍କାନାଳ ଗୁଣୀ ମାସେ ରହିଲା । ସେ ଥିଲା ପର୍ଯ୍ୟନ୍ତ କିଛି ହୁଏ ନାହିଁ । ଦୁଅର ମୁହଁରୁ କସ ଗୋଡ କାଢିଲା ମାନେ ଯେଉଁ କଥାକୁ ସେଇକଥା । ଯୋଜର ଗୁଣୀକୁ ସାଢ଼େ ଆଣିଲି । ଦେଢ଼ଶହ ଟଙ୍କା ଖର୍ଚ୍ଚ—ତିରିଶ ଟଙ୍କା ନେଲା । ସେ ଯିବାର ଅଧଘଣ୍ଟା ପରେ ଯେଉଁ କଥାକୁ ସେହି କଥା ।

ଶେଷକୁ ଚନ୍ଦ୍ରମଣି ମହାପାତ୍ର କହିଲେ ଯେ ନିଆଳୀରେ ଧର୍ମକୃଷ୍ଣ ବୋଲି ଜଣେ ଗୁଣୀ ଅଛନ୍ତି । ତାଙ୍କୁ ଆଣିଲାରୁ ସେ କ'ଣ ସବୁ ପୂଜା କରି ଗୋଟିଏ ଫରୁଆରେ ବନ୍ଦକରି ନେଇଗଲେ ।

ତା'ପରେ ଆଉକିଛି ହୋଇ ନାହିଁ । ମୋଟରେ ମୁଁ ଦେଢ଼ବର୍ଷ ହେଇଗଲା । ଏସନ୍ଧୁ ସମୟ ଭିତରେ କେତେ କେତେ କାଣ୍ଡ ଘଟି-ଯାଇଛି ।

ଶ୍ରୀ ନିମାଇଚରଣ ସେନ୍‌ଗୁପ୍ତ

---

ବୋଟଲ ଖାଇ, ତୁଳସି ବୋଟଲ ଖାଇ ଦେହକୁ କରିଛୁ ଏତେ ଜର୍ଜର
ତୋ ମାଣ୍ଡିଆ ଖାଇଲେ କୁଆଡ଼େ ବାତ ହୁଏ ମର ମର ।

( ୧୮ )

କଟକ

ତା ୨୪ । ୮ । ୭୦

## ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ସାହିତ୍ୟାଚାର୍ଯ୍ୟଙ୍କ ଅଭିଜ୍ଞତା

୧୯୧୧ ସାଲ ଏଇ ଭାଦ୍ରମାସ । ଜନ୍ମାଷ୍ଟମୀଦିନ . ଅଚାନକ ମହାନଦୀରେ ବଢ଼ି ମାଡ଼ି ଆସିଲା । ତାହା ଏ ବର୍ଷ ପରି ବ୍ୟାପକ ହୋଇଥିଲା କି ନାହିଁ, ମୋ ମନେ ନାହିଁ, ତେବେ କଟକ ତଳେ ମାଣିବାଡ଼ ଘାଇ ଭାଙ୍ଗି ଯିବାରୁ କାଠଯୋଡ଼ୀ ଓ ସିଂହୁଆ ମଝିରେ ଥିବା ବସ୍ତୀଳଣ୍ଡ ମୌଜାରେ ଏହାର ପ୍ରଭାବ ଅତ୍ୟଧିକ ହୋଇଥିଲା । ଅନେକ ଗାଁ ଗୃହଶୂନ୍ୟ ହୋଇଗଲା । ଦୁଇ ତିନିଦିନ ଯାଏ ଲୋକେ ଇତସ୍ତତଃ ହୋଇ ରହିଲେ । ପରେ ନିଜ ଘରକୁ ଫେରିଲେ ।

ବଢ଼ି ପରେ ପରେ ହଇଜା ବ୍ୟାପିଗଲା । ମୁଁ ନିଜେ ଆକ୍ରାନ୍ତ ହୋଇଥିଲି, ମାତ୍ର ବଞ୍ଚିଗଲି । କିନ୍ତୁ ସେହି ମାସର ପୂର୍ଣ୍ଣିମାଦିନ ମୋର ପିତା ହଇଜା ବେଗରେ ପ୍ରାଣ ହରାଇଲେ ।

ତା'ପରେ ଅନେକ ଦିନ କଟିଗଲା । ୧୯୧୬ ମସିହାରେ ମୋ ବଡ଼ଭାଇଙ୍କ ଅନୁପସ୍ଥିତିରେ ମୁଁ ପିତୃଦେବଙ୍କ ସାମ୍ବତ୍ସରିକ ଶ୍ରାଦ୍ଧକ୍ରିୟା ସମ୍ପନ୍ନ କଲି । ମୁଁ ସେତେବେଳେ ଅବିବାହିତ । ତେଣୁ ଶ୍ରାଦ୍ଧର ପାକାଦି ମୋର ଭାଉଜ କରିଥିଲେ । ଯଥା ସମୟରେ ସେ

---

ହର ଗୌରୀ ତୋତେ ଦେଖି ଦେଖି ମୋ ଦିନ ଯାଉ ସବୁ
ତୁ କେତେ କୋମଳ, ସ୍ନିଗ୍ଧ, କେତେ ତୋଷ,
ତୁ ନାଲି, ହଳଦୀ ଗନ୍ଧ ଭରା ।

ଶ୍ରାଦ୍ଧ ସ୍ଥଳକୁ ପୁରୋହିତ ଆଣିଲେ । ପିଣ୍ଡ ବଳିବା ପାଇଁ ଗୋଟିଏ ବଦଳି ମନ୍ତ୍ର ମୁଁ ପଢାଇଲି । କିନ୍ତୁ ସେଥିରେ ପାଣି ଛୁଇଁବା ଆଗରୁ ମୋର ଭାଉଜ ଅନ୍ନବାଢ଼ି ଦେଲେ । ତାହା ମୁଁ ଓ ପୁରୋହିତଙ୍କ ଉପସ୍ଥିତିରେ ଘଟିଥିଲା । ଅନ୍ୟ କେହି ସେଠାରେ ନ ଥିଲେ । ଶ୍ରାଦ୍ଧ ଓ ଆନୁଷଙ୍ଗିକ କ୍ରିୟା ଭୋଜନ ପ୍ରଭୃତି ସମସ୍ତ କାର୍ଯ୍ୟ ଶେଷ ହେଲା ।

ମୋର ପିତାଙ୍କର ଜଣେ ପିତୃବ୍ୟ ଥିଲେ । ସେ ଶ୍ରାଦ୍ଧଦିନ ଗାଁରେ ନ ଥାଇ କଟକରେ ରହୁଥିଲେ । ତହିଁପରଦିନ ଘରେ ଆସି ପହଞ୍ଚିଲାକ୍ଷଣି ଆମ ଘରକୁ ଆସି ମୋତେ କହିଲେ—କିରେ, କେମିତି ଶ୍ରାଦ୍ଧ କଲୁ କି ? କାଲି ରାତିରେ ସର୍ବେଶ୍ୱର ( ମୋ ପିତାଙ୍କ ନାମ ) ମୋତେ ସ୍ୱପ୍ନରେ କହିଲା—"କଟେଇ ମୁଁ ଖାଇବାରେ ବଡ଼ ଅତୃପ୍ତ ହେଲି । ସେ ସାନ ଲୁଙ୍ଗୁରୁଟା ପଦରେ ପାଣି ନ ଛୁଇଁ ମୋତେ ଖାଇବାକୁ ଦେଲା ।" ତାଙ୍କ କଥାକୁ ହସି ଉଡାଇ ଦେଲି । ମାତ୍ର ତାର କେତେ ଦିନ ପରେ ମୁଁ କଟକରେ ଥିବା ଭାଇନାଙ୍କ ଠାରୁ ପତ୍ର ପାଇଲି । ସେଥିରେ ସେ ଲେଖିଥିଲେ ମୋତେ ବାପା ସ୍ୱପ୍ନରେ କହିଲେ—ତୁ ମୋତେ ଖାଇବାକୁ ଦେଲୁ ନାହିଁ । ମୁଁ ଖାଇବାରେ ବଡ଼ ଅସନ୍ତୁଷ୍ଟ ହେଲି । ତେଣୁ ମୁଁ ଏଠାରେ ପୁଣି ଶ୍ରାଦ୍ଧ କଲି ।

---

ବିଚ୍ଛେଦେ ମୋହ, ମିଳନେ ମୋହ, ମୋହ ଏହି ଜଗ
ନୋହିବ ଯେବେ ନୋହିବ ସମ୍ମୋହ-ମୋହିତ ହୋଇଛି ମୋହର ।

( ୧୯ )

# ଗୋଟିଏ ପ୍ରହେଳିକା

ଅଧ୍ୟାପକ – ଶ୍ରୀ ଶ୍ରୀଧର ଦାସ

ମନୁଷ୍ୟ ମରିଗଲେ ତାର ଆତ୍ମା ପୃଥିବୀରେ ଘୂରି ବୁଲେ, ସେ ପୁଣି ସମୟ ସମୟରେ ଶରୀର ଧାରଣ କରି ଭୂତ ପ୍ରେତ ଆକାରରେ ଲୋକମାନଙ୍କୁ ଦେଖାଦିଏ, ଏ ପ୍ରକାର ବିଶ୍ୱାସ ମୋର ନାହିଁ । ଅନେକ ଲୋକଙ୍କଠାରୁ ଭୂତ ପ୍ରେତ ସମ୍ବନ୍ଧରେ ବହୁତ କଥା ଶୁଣିଛି, କେତେ ବହିରେ ମଧ୍ୟ ପଢିଛି, କିନ୍ତୁ ସେ ସବୁରେ ମୋର ଆସ୍ଥା ନ ଥାଏ । ତେବେ ଏପରି କେତେକ ଘଟଣା ମୋର ଜୀବନରେ ଘଟିଛି, ଯାହାର ସ୍ୱାଭାବିକ କାର୍ଯ୍ୟ କାରଣ ସମ୍ବନ୍ଧ ମୁଁ ଏବେ ସୁଦ୍ଧା ସ୍ଥିର କରି ପାରି ନାହିଁ । ସେହିପରି ଗୋଟିଏ ଘଟଣା ଏଠାରେ କହୁଅଛି ।

ପ୍ରାୟ ୩୦ ବର୍ଷ ତଳେ ମୁଁ ପୁରୀରୁ କାକଟପୁର ଯାଉଥାଏଁ । ମୁଁ, ମୋର ସ୍ତ୍ରୀ, ମୋର ଦୁଇଟି ପିଲା– ବଡଟି ୩ ବର୍ଷର ଝିଅଟିଏ, ସାନଟି ଦେଢ ବର୍ଷର ପୁଅ—ଓ ମୋର ବାପା ଗୋଟିଏ ବଳଦ ଗାଡ଼ିରେ ପୁରୀରୁ ଦିନ ପାଞ୍ଚଟା ବେଳେ ବାହାରିଲୁଁ । ପୁରୀଠାରୁ ବାଲିଘାଇ ପର୍ଯ୍ୟନ୍ତ କେବଳ ବାଲି; ସେଥିରେ ଶଗଡ ଗୁଳା ଛଡା ଅନ୍ୟ କୌଣସିଠାରେ ଗାଡ଼ି ନେବା ସହଜ ନୁହେଁ । ଆଜି କାଲି ଯେଉଁ ସରକାରୀ ପ୍ରକାଣ୍ଡ ଝାଉଁ ଜଙ୍ଗଲ ଦେଖାଯାଏ, ସେତେବେଳେ

---

ଘର ନାହିଁ, ଦ୍ୱାର ନାହିଁ, ବର୍ଷା, ଅସଂଖ୍ୟ ଲୋକ ହେଉଛନ୍ତି ହଲବଲ
କି କରିବି ବୁଝି––କି ବିପତ୍ତି ହେଲା, କି କାଳ ଘୋଟିଲା
ବୁଡ଼ିଗଲା ନଈ ନାଳ, ବୁଡିଗଲା ବିଲ ।

ସେ ଜଙ୍ଗଲର ଗଛ ସବୁ ଖୁବ ଛୋଟ ଥିଲା । ବୋଧ ହୁଏ ଗଛ ଗୁଡ଼ିକ ୫।୭ ବର୍ଷର ହୋଇଥିବେ ।

ଗାଡ଼ି ଧୀରେ ଧୀରେ ଚାଲୁଥାଏ । ଘଣ୍ଟାରେ ଦେଢ଼ ମାଇଲ ଦୁଇ ମାଇଲରୁ ବେଶି ବେଗରେ ନୁହେଁ । କାଳାଘାଇ ପ୍ରାୟ ୯ ମାଇଲ ବାଟ ଅଛି, ସନ୍ଧ୍ୟା ହୋଇ ଆସିଲା । ଗାଡ଼ିରେ ସ୍ଥାନାଭାବ ହେତୁରୁ ମୋର ବାପା ଓ ମୁଁ ଗାଡ଼ି ପାଖେ ପାଖେ ଚାଲୁଥାଉଁ । ଅନ୍ୟମାନେ ଗାଡ଼ି ଭିତରେ । ଗାଡ଼ିବାଲା ଆଗରେ ବସି ଗାଡ଼ି ଚଳାଉଥାଏ । ହଠାତ୍ ବଳଦ ଯୋଡ଼ିକ ଶଗଡ଼ ଚୁଲାରେ ନ ଚାଲି ଇତସ୍ତତଃ ହେଲେ । ମୁଁ ଶଗଡ଼ ଦଣ୍ଡାକୁ ଧରି ଜୁଲାରେ ଗାଡ଼ିକୁ ଚଳାଇବାକୁ ଚେଷ୍ଟା କରି ବିଫଳ ହେଲି । ଗାଡ଼ିବାଲା କହିଲା ଯେ ଏ ନୂଆ ସରକାରୀ ଜଙ୍ଗଲ ହେବାରୁ ବେଳେ ବେଳେ ବାଘ ପଶୁଛନ୍ତି; ପୁଣି ଚୋର ଡକେଇତ ଲୁଚି ରହି ବାଟୋଇଙ୍କଠାରୁ ସବୁ ଛଡ଼ାଇ ନେଉଛନ୍ତି । ବୋଧହୁଏ ବାଘର ଗନ୍ଧ ପାଇ ବଳଦ ହୁରୁଡ଼ୁଛନ୍ତି । ଏକଥା ଶୁଣି ମୋ ମନରେ ବଡ଼ ଭୟ ହେଲା । ଅନ୍ତତଃ ୩।୪ ମାଇଲ ମଧ୍ୟରେ ଆମ ଏଇ କେତୋଟି ଲୋକଙ୍କଛଡ଼ା ଆଉ କେହି ଥିବାର ସମ୍ଭାବନା ନଥିଲା । କେବଳ ବାଲି ପଡ଼ିଆ ଓ ଏକ ପାଖରେ ଛୋଟ ଝାଡ଼ି ଜଙ୍ଗଲ । ଦୈବାତ୍ ବାଘ ଆକ୍ରମଣ କଲେ କିମ୍ବା ଡକାଏତମାନେ ଆମ ଉପରେ ଅତ୍ୟାଚାର କଲେ କଅଣ କରିବୁ ? ନିଜକୁ ନିତାନ୍ତ ଅସହାୟ ମନେ ହେଲା ।

---

ସଗର ସଦର ହୋଇ ଜୀବନ ଗଲା

ଧ୍ରୁବ ବନ୍ଧୁ ଅହା ! କାହିଁ ମିଳିଲା ?

ତଥାପି ମନରେ ସାହସ ବାନ୍ଧି ଗାଡ଼ି ଭିତରୁ ଟିକିଏ ଅଲ୍ପ ବାହାର କରି ଅମର ଗ୍ରହପିଣ୍ଡକୁ ଏରେ ଦେଖିଚେଷ୍ଟାଲି, କୌଣସି ପାଖେ କିଛି ଦେଖାଗଲା ନାହିଁ ।

ଏଣେ ବଳଦ ଯୋଡ଼ିକ ଗାଡ଼ିକୁ ଇତସ୍ତତଃ ଟାଣୁଥାନ୍ତି । ଗାଡ଼ି-ବାଲାର ପାଞ୍ଚଣ ପ୍ରହାର ଓ ମୋର ଦଣ୍ଡା ମୋଡ଼ିବାରେ କିଛି ଫଳ ହେଉ ନ ଥାଏ । ମୁଁ ଅବଥରେ ଟିକିଏ ଗ୍ରହଅଡ଼େ ପକାଇ ଦେଖିଲି । ଏଥର ଅମର ବାଁ ପାଖେ ଅନେକ ଦୂରରେ ଗୋଟାଏ ଧଳା ପଦାର୍ଥ ଦେଖିବାକୁ ପାଇଲି । ତାର ଉଚ୍ଚତା ୨।୩ ହାତରୁ ବେଶି ହେବ ନାହିଁ । ଅନ୍ୟମାନଙ୍କୁ ସେଇଟି ଦେଖାଇଲି, ଗାଡ଼ିବାଲା କହିଲା ଯେ ସେଇଟା ବାଘ ହୋଇ ନ ପାରେ । ଟିକିଏ ଆଶ୍ୱସ୍ତ ଅସିଲି, ମାତ୍ର ସେଇଟା କଅଣ କିଛି ସମାଧାନ ହୋଇ ପାରିଲା ନାହିଁ ।

ମୁଁ ଟିକିଏ ସେହି ପଦାର୍ଥ ଆଡ଼କୁ ଚାହିଁବାରୁ ସେଇଟି ଆମ ଆଡ଼କୁ ଗତି କରୁଥିବାର ବୋଧ ହେଲା । ତାର ଆକାର ମଧ୍ୟ ବଡ଼ ଦେଖାଗଲା । ମୋତେ ବୋଧ ହେଲା, ସତେ ଯେପରି ଦୁଇଜଣ ଡେଙ୍ଗା ଲୋକ ଧଳା ଲୁଗାରେ ଆପାଦମସ୍ତକ ଆବରଣ କରି ଆମ ଆଡ଼କୁ ଆସୁଛନ୍ତି ।

ହଠାତ୍ ମୋର ଆଶଙ୍କା ହେଲା—ଦୁଇଜଣ ଲୋକ ଆମକୁ ଆକ୍ରମଣ କରିବାକୁ ଆସୁଛନ୍ତି । ମୋର ଏ ଆଶଙ୍କା ପ୍ରକାଶ କରିବାରୁ

---

ସଫଳ ସ୍ୱପ୍ନା ହୁଅ ତୁହି ମାନିନୀ, ଏବେ କିନ୍ତୁ ରହିଛୁ ହୋଇ ବଡ଼ ଅଭାଗିନୀ
ମୁଁ ଭାବି ଭାବି ତୋତେ ମିଶିଯାଏ ତୋ' ସାଥେ, ଭାବେଁ, ସ୍ୱପ୍ନ ତୋର
ସତ୍ୟ ହେବ କହଣୀ ।

ଗାଡ଼ିବାଲା ଓ ବାପା ମୋ ସହିତ ଏକମତ ହେଲେ । ଅସ୍ତ୍ରରକ୍ଷା ପାଇଁ ଗାଡ଼ି ଭିତରେ ଥିବା ଠେଙ୍ଗାଟିକୁ ବାହାର କରି ବାପା ହାତରେ ଧରିଲେ । ଗାଡ଼ିବାଲା ଢିଲକୁ ଓହ୍ଲାଇ ଆସିଲା । ମୁଁ ସେହି ଅଜ୍ଞାତ ପଦାର୍ଥଟି ଆଡେ ଟିକିଏ ଚାହିଁଥାଏ; ସମସ୍ତେ ତାକୁ ଅନାଇ ରହିଥାଉଁ । କ୍ରମଶଃ ସେହି ପଦାର୍ଥଟି ଆମର ଖୁବ ନିକଟବର୍ତ୍ତୀ ହୋଇଗଲା । ସେତେବେଳକୁ ତାର ଆକାର ଆଠ ଦଶହାତ ଉଚ୍ଚ ହେବ । ଆମ୍ଭେମାନେ କିଛି ସ୍ଥିର କରି ପାରିଲୁ ନାହିଁ । ହଠାତ୍ ଗାଡ଼ିବାଲା ମୋ ହାତରୁ ଟିକିଏ ଲଣ୍ଠନ ଓ ବାପାଙ୍କ ହାତରୁ ଠେଙ୍ଗାଟା ଟାଣି ନେଇ ଗାଡ଼ି ଭିତରେ ରଖିଦେଲା କହିଲା—ବାବୁ, ଏଠି ଗୋଟାଏ ଭୂତ ଥାଏ, ଆଜ ଆମେ ତା ହାବୁଡ଼ରେ ପଡ଼ିଗଲେ । ଏହା କହି ଆମ ଦୁହିଁଙ୍କର ହାତରେ ଗୋଟାଏ ଗୋଟାଏ ବଳଦର ଲାଞ୍ଜ ଧରାଇ ଦେଲା । ଆମକୁ ଆଖି ବୁଜି ରହିବାକୁ କହିଲା । ଆମେ ମନ୍ତ୍ରମୁଗ୍ଧଭଳି ସବୁ ତାହାହିଁ କଲୁ । କିଛି ସମୟ ପରେ ଆମକୁ ଆଖି ମେଲିବାକୁ କହିଲା ମାତ୍ର ମୋତେ ଟିକିଏ ମାରିବାକୁ ଦେଲା ନାହିଁ । ଗାଡ଼ି ଭିତରେ କିଛି ମହାପ୍ରସାଦ ଥିଲା । ଗାଡ଼ିବାଲାର ଉପଦେଶ ଅନୁସାରେ ତାକୁ ସେହି ବାଲି ଉପରେ ରଖିଦେଲୁ ।

ଗାଡ଼ି ପୁଣି ଧୀରେ ଧୀରେ ଚାଲିଲା । ବଳଦମାନଙ୍କର ଆଉ ଚାଞ୍ଚଲ୍ୟ ଦେଖାଗଲା ନାହିଁ । ରାତି ପ୍ରାୟ ଆଠଟା ବେଳେ ଆମ୍ଭେମାନେ ଡାକ୍ ଘରେ ପହଞ୍ଚିଲୁ ।

---

ବଡ଼ ପିଷ୍ଟାସୁ ମୁହିଁ, ତୋହର ଚରଣକଳେ ସଦା ସ୍ନାନ କରିବ ରହୁ
ପିଚସକନ୍ଦିସୁ ମୁହିଁ, କିନ୍ତୁ ଡାକୁଛି କାହିଁ ? ଯାଏ ସେ ଦୁଃଖ ରହୁ
ତୁ ରହିଛୁ କେତେ ସହୁ ।

( ୬୯ )

ଫଳରେ ଏହି ଘଟଣା ବିଷୟରେ ମୁଁ ଅନେକଥର ଭାବିଛି । ସେ ଧଳା ପଦାର୍ଥଟା କଅଣ ? ମୋର ହୁଏତ ମାନସିକ ଭ୍ରମ ହୋଇ ପାରିଥାନ୍ତା; କିନ୍ତୁ ଅନ୍ୟମାନେ ମଧ୍ୟ ତାହା ଦେଖିଛନ୍ତି । ସମସ୍ତଙ୍କର କଅଣ ଏକା ବେଳକେ ଏକାପରି ଭ୍ରମ ହେଲା ? ବଳଦ ଯୋଡ଼ାକ ଏପରି ଇତସ୍ତତଃ ହେବାର କାରଣ କଅଣ ? ହୁଏତ ଗାଡ଼ିବାଲା ନିଜର ପ୍ରୌଢ଼ି ଦେଖାଇବା ପାଇଁ ମିଛରେ ମନ୍ତ୍ର ବୋଲୁଥିଲା; ମହାପ୍ରସାଦ-ତକ ବାଲିରେ ଫିଙ୍ଗି ଦେଇଥିଲା । କିନ୍ତୁ ପ୍ରଶ୍ନ ହେଉଛି—ସେ ପଦାର୍ଥଟା କଅଣ; ସେ କିପରି ଅନ୍ଧାରରେ ବଢ଼ି ବଢ଼ି ଆମ ଆଡ଼କୁ ଅଗ୍ରସର ହେଲା ?

ଆଜି ବୁଢ଼ା ଏ ଘଟଣାଟି ମୋ ପାଖରେ ଏକ ପ୍ରହେଳିକା ପରି ହୋଇ ରହିଛି; କିଛି ସମାଧାନ କରିପାରି ନାହିଁ ।

—:o:—

( ୭୦ )

## ସ୍ୱପ୍ନ ନା ସତ୍ୟ

**ଶ୍ରୀ ରମେଶପ୍ରସାଦ ମହାନ୍ତି**

କଟକ ସହରର ଗୋଟିଏ ଛୋଟିଆ ଗଳିରେ ଏକ ଚାଳଘର । ହୀରେନବାବୁ ସେହି ଚାଳଘରେ ଥାନ୍ତି । ଜ୍ୱର ବେଗରେ ସେ ସାମାନ୍ୟ ଅସୁସ୍ଥ । କେବଳ ଯେ ସେ ଜଣେ ଅସୁସ୍ଥ ଡାକ୍ତର, ତା ନୁହେଁ

---

ସଂକଳ୍ପ କେଉଁ ସଂକଟ ସାଥେ ହେଲୁ ଜୀବନ ବିତାଇ
ଏବେ ଭାଳିଲେ ହେବ କଣ ? ଯାହା ଯାଇଛି ଯାଉ, ଚେଷ୍ଟା କର
ନୂତନ ଜୀବନ ପାଇଁ ।

ତାଙ୍କଘର ସୁସ୍ଥ ସବଳ ଥାଇ "ହାଡ଼" ଦେହ ମଧ୍ୟ କାହିଁକି ସେଦିନ ଖରାପ ହେଲା, ହାଡ଼ାରୋଗ । ରାତି ନ ହେଉଁ ଦିନ ଶରେନ୍ ବାବୁଙ୍କ ପୁରା ନିଦ ଲାଗିନାହିଁ, ସେ ପ୍ରାୟ ଉଜାଗର । ସେ ଦେଖୁଛନ୍ତି "ଜମରାଜ" ଦୁଇଜଣ ଅପ୍ରସ୍ତୁତ ଲୋକଙ୍କୁ ତାଙ୍କର ବରେନ୍‌ବାବୁ ଥିବା କୋଠରି ମଧ୍ୟକୁ ପଠାଇଲେ । ସେମାନେ ଆସି କହିଲେ ବୀରେନ୍ ବାବୁ, ଆପଣଙ୍କ ସମୟ ହୋଇଗଲା, ଯମରାଜଙ୍କ ଆଦେଶ-ଅନୁସାରେ ଆମ୍ଭେମାନେ ଆପଣଙ୍କୁ ନେବାପାଇଁ ଆସିଛୁ । ବୀରେନ୍-ବାବୁ ଦେଖିଲେ ତାଙ୍କ ସାମ୍ନାରେ ୨ ଜଣ ପ୍ରଚଣ୍ଡ କାୟ ବଳିଷ୍ଠ ଲୋକ ଦଣ୍ଡାୟମାନ । ହାତରେ କଣ୍ଟା ପାଞ୍ଚି ଓ ପାଣିବଡା କଣ୍ଟା ଦଉଡି ଓ ବାଡ଼ି । ବୀରେନ୍ ବାବୁ ହଠାତ୍ ତାଙ୍କୁ ଜବାବ ଦେଲେ ନାଁ ମୁଁ ବର୍ତ୍ତମାନ କେବେ ଯାଇ ପାରିବିନାହିଁ, କାରଣ ମୋର ସମୟ ହୋଇନାହିଁ । ଆପଣ ମାନେ ଏ ଘର ଛାଡ଼ି ଚାଲିଯାନ୍ତୁ । ଆପଣଙ୍କର କୌଣସି ଅଧିକାର ନାହିଁ ମୋତେ ବର୍ତ୍ତମାନ ଏପରି ଅବସ୍ଥାରେ ନେଇ ଯିବାକୁ । ସେ ଦୁଇଜଣ ଲୋକ ଓ ବୀରେନ୍‌ବାବୁଙ୍କର କେବଳ ଯେ ଏପରି କଠିନ କଥାବାର୍ତ୍ତା ହେଲା ତା ନୁହେଁ ପ୍ରାୟ ଖଣ୍ଡ ଯୁଦ୍ଧ ଏକ ହେଲା । ଶେଷରେ ସେ ଲୋକ ଦୁଇଜଣ ସଙ୍ଗରେ ଆଣିଥିବା ପୋଥି ଦେଖି କହିଲେ । କଣ ଭୁଲ୍ ହୋଇଗଲା ? ପ୍ରକୃତରେ ପୋଥିରୁ ବାହାରିଲା । ବରେନ୍‌ବାବୁଙ୍କର ସମୟ ହୋଇନାହିଁ । ତେଣୁ ସେ କୋଠରି ଛାଡ଼ି ଅନ୍ୟ ଘରକୁ, ଯେଉଁଘରେ ସୁସ୍ଥ ସବଳ "ହାଡ଼ ଶୋଇଛନ୍ତି । ସେ ଘରକୁ ଯାଇ ତାର ଗୁପ୍ତ

---

ପ୍ରସ୍ଫୁଟିତା ଧର ତୋର ଦେଖିଛି କେତେ ଥର,
ଯେତେ ଥର ଦେଖିଛି, ଭାବିଛି ହେଲା ତୋତେ ଅନ୍ତରେ ମୋର ।

ଅବସ୍ଥାରେ ତା ଶରୀର ମଧ୍ୟରେ ପ୍ରବେଶ କଲେ । ସୁସ୍ଥ ସବଳ ହାଣ୍ଡ, ଯାହାକୁ କି ରୋଗ ଛୁଇଁ ପାରେ ନାହିଁ କି ପାର ନଥିଲା, ତାକୁ ସେହି ମୁହୂର୍ତ୍ତ ଠାରୁ ହଠାତ୍ ଝାଡା ରୋଗ ଆରମ୍ଭ ହେଲା ଓ ଏପରି ହେଲା ଯେ ତାର ରୋଗ ଭଲ ହେବା ମଧ୍ୟ କଠିନ ହେଲା ।

ତା ପରଦିନଠାରୁ ବୀରେନ୍ ବାବୁ ଆରୋଗ୍ୟ ହୋଇଗଲେ, କିନ୍ତୁ ହାଡ଼ର ଅବସ୍ଥା । ଦିନକୁଦିନ ଖରାପ ଅଡକୁ ଚାଲିଲା । ଶେଷରେ ସେ କଟକ ବଡ଼ ଡାକ୍ତର ଖାନାକୁ ନିଆଗଲା, ସେଥିରେ ଝାଡା ରୋଗ ସାମାନ୍ୟ କମିଗଲା ପରେ ସେ ଘରକୁ ଫେରି ଆସିଲା ସତ କିନ୍ତୁ ତାର ସ୍ୱାସ୍ଥ୍ୟ ବାରଅଣା ଭାଙ୍ଗିଗଲା ଓ ଆଗରୁ ଦେଖିଥିବା ଲୋକ ଏବେ ତାଙ୍କୁ ଦେଖିଲେ ଚିହ୍ନି ପାରିବେ ନାହିଁ । କି ଭୟଙ୍କର ରୁଗ୍ଣ ଶରୀର । କଟକରେ ହାଡ଼ର ଦେହ ପୂର୍ଣ୍ଣ ଆରୋଗ୍ୟ ନ ହେବାରୁ ତାକୁ ଭୁବନେଶ୍ୱରକୁ ଯେଉଁଠାରେ କି ବୀରେନବାବୁଙ୍କର ବଡ ଭାଇ ଓ ବଡାହ୍ୱଉ ଭଉଣୀ ଥାନ୍ତି ସେଠାକୁ ପଠାଇ ଦିଆଗଲା । କାରଣ ଭୁବନେଶ୍ୱରର ଜଳବାୟୁ କଟକ ତୁଳନାରେ ଭଲ ବୋଲି ।

ହାଡ଼ ଭୁବନେଶ୍ୱର ଆସି ବୀରେନବାବୁଙ୍କ ଭାଇଙ୍କ ଘରେ ରହିଲା । କଟକର ଆସିବା ପ୍ରାୟ ଏକବର୍ଷରୁ ବେଶି ହୋଇଗଲା ; ଯେତେ ଡାକ୍ତରଙ୍କୁ ଦେଖାଇଲେ ଓ ଔଷଧ ଦେଲେ ମଧ୍ୟ ତାର ରୋଗ ଭଲ ହେଲାନାହିଁ । ତାର ରୋଗ କଣ କେହି ଚିହ୍ନି ପାରିଲେ ନାହିଁ । ଏ ମଧ୍ୟରେ ସେ ଦୁଇଥର କ୍ୟାପିଟାଲ ଡାକ୍ତର ଖାନାରେ

---

କାଟ୍ ମଧୁ ଅଛୁ ତୁମର, ବାଟ୍ ନିଷ୍ଠା ବାନ୍ଧି ?
ନିଷ୍ଠା ବିନା ମଧୁ ପିନା ଶେଷେ ବିଷ୍ଠା ହୋଇ ।

ଭର୍ତ୍ତି ହୋଇ ପୁଣି ବସାକୁ ଫେରି ଆସିଛି । ଯଦିଓ ସେ ନରେନ୍ ବାବୁଙ୍କ ଭାଇଙ୍କ ବସାରେ ଥାଏ, ତଥାପି ତାଙ୍କ ଭଉଣୀଙ୍କ ଘର ତାଙ୍କ ଭାଇଙ୍କ ଘରକୁ ଖୁବ୍ ନିକଟ, ହାଡ଼ୁ ବରାବର ତାଙ୍କ ଭଉଣୀଙ୍କ ଘରକୁ ଆସେ । କାରଣ ବାପଘର ପୂର୍ବରୁ "ସୁଧା ଦେଈ" (ବିରେନ୍ ବାବୁଙ୍କ ଭଉଣୀ) ହାଡ଼ୁ ସହିତ ପ୍ରାୟ ମା ପରି ଚଳିଛନ୍ତି ଓ ବାପଘର ପରେ ହାଡ଼ୁର ଇଚ୍ଛା ସେ ସବୁଦା ସୁଧା ଦେଈଙ୍କ ଘରେ ରହନ୍ତା; ତା ହେଲେ ତାର ଖାଇବା ପିଇବା ଟିକେ ବେଶି ସୁବିଧା ହୁଅନ୍ତା ।

ଏ ବେମାର ଅବସ୍ଥାରେ ପ୍ରାୟ ବର୍ଷକର ବେଶି ସମୟ ଭିତରେ ହାଡ଼ୁ ପ୍ରାୟ ହରୁଦିନେ ବା ଦିନେ ଛଡ଼ା ଦିନେ ସୁଧା ଦେଈଙ୍କ ଘରକୁ ଆସି କହେ 'ସୁଧା' କଣ ଅଛି ଦେଲୁ ମା, ମୁଁ କଣ ଆଉ ବଞ୍ଚିବି । ଭଲକରି ମାସେ ଖଣ୍ଡେ ଦେଲୁ ତୋ ହାତରେ ଭାଙ୍ଗି ।" ମୋଟ ଉପରେ ସେ ବିରେନ୍ ବାବୁଙ୍କ ଭାଇଙ୍କ ଘରେ ରହିଥିଲେ ମଧ୍ୟ ତାର ଆଶା ସବୁବେଳେ ସୁଧା ଦେଈଙ୍କ ପାଖରେ । ଏତିକି ବେଳେ ସେ ଦୁଇଟି ଅଳଙ୍କାର ଗୋଟିଏ କାନର ଓ ଆଉ ଗୋଟିଏ ବେକର କଣ୍ଠି ସୁଧା ଦେଈ ପାଖରେ ରଖି କହୁଥାଏ, ମୁଁ ମରିଗଲେ ଗୋଟିଏ ତୋ ଝିଅକୁ ଦେବୁ ଓ ଅନ୍ୟଟି ମନିକୁ ଦେବୁ (ବିରେନ୍ ବାବୁଙ୍କ ଭାଇଙ୍କ ଝିଅ) ।

ତା ଦେହ ପୁଣି ବିଶେଷ ଖରାପ ହେବାରୁ ସେ ଡାକ୍ତର-ଖାନାରେ ଭର୍ତ୍ତି ହେଲା । ଏ ହେଲା ହାଡ଼ୁର ଘରୁ ଗୋଡ଼ କାଢିବାର

---

ଆଜି ଦିନର ଶୁଭ ମୁହୂର୍ତ୍ତ ଆସିଛି ଯେବେ
ତ୍ରାଣ ଥାଏଁ ତୁମର ପାଶେ ଯେ ମୋର ପ୍ରିୟ ଏବେ
ଲଳିତ ସୁନ୍ଦର ରୂପ ତୁମର, ଭାବନା ମୋର ତହିଁ ଥାଏ
ହେବ କି ପୁଣି ଦେଖା, କଥା ପୁଣି ହେବ କେବେ, ମନ ଭାବେ ।

ଶେଷ ଯାଏ । ଏଥର ସେ ଆଉ ଘରକୁ ଫେରି ନାହିଁ । ଡାକ୍ତର-ମାନେ କହିଲେ ବୁଢ଼ୀ ଆଉ ଠାକବ ନାହିଁ, କିଛିଦିନ ପରେ ହାଡ଼ିର ଜୀବାତ୍ମା ତାର ସ୍ଥୂଳ ଶରୀର ତ୍ୟାଗ କରିଗଲା ।

ହାଡ଼ିର କିନ୍ତୁ ଆଶାକିଛି ପୂର୍ଣ୍ଣ ହୋଇନାହିଁ, ବର୍ତ୍ତମାନ ସେ ସ୍ଥୂଳ ଶରୀରରେ ଅଛି କି ନାହିଁ ସେ ଜାଣି ପାରୁନାହିଁ । ତାର ଜୀବନର ଗୋଟିଏ ବଡ଼ ଆଶା ଥିଲା, ତାର କପିରି ପୁଅଟିଏ ହୁଅନ୍ତା, ଯେଉଁଟା ହୋଇ ପାରି ନାହିଁ । ବର୍ତ୍ତମାନ ସେ ସୂକ୍ଷ୍ମ ଶରୀରରେ ଚାରିଆଡ଼େ ବୁଲି ଗୋଟିଏ ପୁଅ ସଂଗ୍ରହ କରୁଛି । ଶେଷରେ ପାଇଲା ମଧ୍ୟ, ବର୍ତ୍ତମାନ ସେ ଗୋଟିଏ ପୁଅଧରି ଚାରିଆଡ଼େ ବୁଲୁଛି । ଜୀବିତ ଅବସ୍ଥାରେ ଦେଇଥିବା ଗହଣାରେ ତାର ଖୁବ୍ ଲୋଭ । ଘରଦ୍ୱାର, ଲୁଗାପଟା ଖାଇବା ସବୁଥିପାଇଁ ।

ରାତି ପ୍ରାୟ ଗୋଟାଏ । ସୁଧା ଦେଈଙ୍କର ପ୍ରାୟ ତନ୍ଦ୍ରାଅବସ୍ଥା ହଠାତ୍ ଦାଣ୍ଡ କବାଟ ଫିଟିଲା । ହାଡ଼ି ଗୋଟାଏ ପୁଅକୁ ଧରି ସୁଧା ଦେଈଙ୍କ ଘରକୁ ଆସିଲା । ସାଙ୍ଗରେ ମଧ୍ୟ ଆଉ ଗୋଟିଏ ଲୋକକୁ ସେ ଆଣିଛି କାଳେ ତାକୁ ଡର ମାଡ଼ିବ ବୋଲି । ମୃତ୍ୟୁ ପୂର୍ବରୁ ତାର ଯେପରି ଭୀଷଣ ଅବସ୍ଥା ଥିଲା, ସେହି ରୂପରେ ସେ ଆସିଛି । ପିଲାଟି ଯାହାକୁ ସଙ୍ଗରେ ଆଣିଛି କି କଦାକାର ବିକଳାଙ୍ଗ ରୂପ । ସଙ୍ଗରେ ଆସିଥିବା ଲୋକଟିର ଚେହେରା ମଧ୍ୟ ତଦ୍ରୂପ, ଆସି ସୁଧା ଦେଈଙ୍କ ଘରେ ବସିପଡ଼ି କହିଲା ପୂର୍ବପରି ମା ମତେ ଖାଇବାକୁ ଦେ କଣ, ଆଉ ମୋ ଜିନିଷ [ଗହଣା] ରଖିଛୁଟି' ? ସୁଧା ଦେଈଙ୍କର

---

ଯାଉଛି ଦିନ ବହି, ଯାଉଛି ଯାଉଛି, କେତେ ବେଗେ ବେଗେ
ନଦୀ ସ୍ରୋତ ପରି, କଳ କଳ କରି କାହିଁ ଚାଲିଗଲା ? ବସି ଏବେ
ଭାବେଁ, ଖାଲି ଭାବେ ।

ସେଇଠିକେ ଆଉ ବେଶୀ ଚାଲି ଆସୁଛି । ସେ ଶାବୁଚନ୍ଦ୍ର ହାଣ୍ଡିର ମରୁଛି, କାହିଁକି ପୁଣି ଆସିଲା ? କଣ ଖାଇବାକୁ ଦେବ, ଦେଖା ତେଣୁ ଗୋଡ଼ ଟିକେ ଘସିଦିଏ ।” ହାଡ଼ି କିନ୍ତୁ କେଉଁଥିରେ ସନ୍ତୋଷ ନୁହେଁ, ଯେତେ କହିଲେ ସେ ଯାଉ ନାହିଁ, ଶେଷରେ ସୁଧା ଦେଈ କହିଲେ ହାଡି ତୁ ସବୁ ଭୁଲିଯା । ହରିନାମ ଜପ । ତୁ ପରା ମରି-ଚାଲୁଛି । ହରିନାମ ଜପିଲେ ତରି ଯିବୁ । ହାଡ଼ି ସୁଧାଦେଈଙ୍କ ଘରୁ ଚାଲି ଯାଉଛି । କିନ୍ତୁ ହରିନାମ ତା ତୁଣ୍ଡରେ ପଶୁନାହିଁ ।

ପୃଥିବୀର ସମସ୍ତ ଚାଲି ଚଳନ ଏକ ନିର୍ଦ୍ଦିଷ୍ଟ ପନ୍ଥା ଅନୁସାରେ ଚାଲୁଛି । ସେ ନୀତିର ପରିବର୍ତ୍ତନ ବା ବ୍ୟତିକ୍ରମ କେବେହେଲେ ହୋଇନାହିଁ । ଶତ ଶତ ଜନ୍ମର ପୁଣ୍ୟ ଫଳରେ ଆମ୍ଭେ ମନୁଷ୍ୟ ଶରୀର ଧାରଣ କରିଛୁ ଓ ତାହାକୁ ଖୁବ୍ ସୁଯୋଗ ଦିଆଯାଇଛି ଯେ ସେ ସେଇ ସମୟ ମଧ୍ୟରେ ନିର୍ଦ୍ଧାରିତ ନିୟମ ଅନୁସାରେ ଆଗେଇ ଚାଲିବ, ଅନ୍ଧକାରରୁ ଆଲୋକକୁ ଯିବ, ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଦୁନିଆର ସମସ୍ତଙ୍କ ପାଖରେ ସେ ଭ୍ରାତୃଭାବ ବିସ୍ତାରିତ କରିବ ଓ ନିଜର ସତ୍ ଓ ନ୍ୟାୟ ପନ୍ଥାରେ ଚାଲିବା ସଙ୍ଗେ ସଙ୍ଗେ ନିଜକୁ ତଥା ସାରା ଦୁନିଆକୁ ସେ ଆଗେଇ ନେବ ଅମର ଲକ୍ଷ୍ୟ ନିକଟକୁ । ଯେ ଏ ପୃଥିବୀର ବିବର୍ତ୍ତନ ସହିତ ଖାପ ଖୁଆଇ ନ ଚାଲିବ, ତାର ଲକ୍ଷ୍ୟ ନିକଟରେ ପହଞ୍ଚିବା ଡେରି ହୋଇଯିବ ଓ ସେ ଜନ୍ମ ପରେ ଜନ୍ମ ହୋଇ କେବଳ ଅଭିଜ୍ଞତା ସଂଗ୍ରହରେ ବ୍ୟସ୍ତ ରହିବ । “ହାଡିକୁ” ଏ ଜନ୍ମରେ ସୁଯୋଗ ମିଳିଥିଲେ ମଧ୍ୟ ତା'ର ସତ୍ ବ୍ୟବହାର

---

ସୁନ୍ଦର ! ଭାବମୟି ! ପ୍ରାଣମୟି ! ତୁମେ ମୋର କାମ୍ୟ, ତୁମେ ପୁଣି
ମୋର ଛାୟା,
ଦିନ ରାତି, ସଂଗୀତ ସହିତେ ଯାଉଛି ଭାସି ତୁମରି ମାୟା, ତୁମରି ମାୟା

ସେ କରିପାରି ନାହିଁ । ଆତ୍ମା ଅମର, ଲୁଗା ପୁରୁଣା ହୋଇଗଲେ ଯେପରି ଆମେ ତାକୁ ପରିତ୍ୟାଗ କରି ନୂତନ ଲୁଗା ବ୍ୟବହାର କରୁ, ସେହିପରି "ହାଡର" ଆତ୍ମା ତାର ପୁରୁଣା ଜର୍ଜ୍ଜ ଶରୀରକୁ ପରିତ୍ୟାଗ କରିଛି ଓ ନୂତନ ବସ୍ତ୍ର ନିଜ୍ଞଲ ପରି, ନୂଆ ଶରୀର ଧାରଣ କରି ଏ ଜଗତରେ ପୁଣି ଅଭିଜ୍ଞତା ସଂଗ୍ରହ କରିବାକୁ ବ୍ୟସ୍ତ ହୋଇ ପଡ଼ିଲାଣି ।



(୨୧)

### ଶ୍ରୀ ଗୌରୀ କୁମାର ବ୍ରହ୍ମା

ମନେ ପଡ଼ୁଛି- ୧୯୮୪ ର କଥା । ଖରାଦିନ, ମୋର ପିତା ସ୍ୱର୍ଗତ ପଣ୍ଡିତ ଚନ୍ଦ୍ରଶେଖର ବ୍ରହ୍ମା ଆସିକା ହାଇସ୍କୁଲରେ ଶିକ୍ଷକତା କରିବା ୧୦।୧୨ ବର୍ଷ ସମୟ ମଧ୍ୟରେ ସେ ପ୍ରତିବର୍ଷ ଖରାଦିନେ ତୀର୍ଥ ଭ୍ରମଣରେ ଯାଉଥା'ନ୍ତି । ସେ ବର୍ଷ ସେ ମହାରାଷ୍ଟ୍ର ଯାଇ-ଥିଲେ । ଆସିକା ସହର ଖମ୍ବେଶ୍ୱରୀ ପାଟନାରେ ଆମେ ଥାଉଁ । ବାଡ଼ ଆଡ଼େ ଋଷିକୁଲ୍ୟା ନଈ- ହାଣ୍ଡିଶାଳଠୁଁ ପ୍ରାୟ ୨୦।୩୦ ହାତ ଦୂରରେ ନଈ । ସେଦିନଟା ହେଉଛି ସାବିତ୍ରୀ ଅମାବାସ୍ୟା । ବୋଉ ମୋର ମାମୁଁ ଘରକୁ ଏ ଦିବସର ୭।୮ ପୂର୍ବରୁ ଚାଲିଯାଇ ଥାଏ ।

---

ଦେଖୁଁ ଦେଖୁଁ ଚାଲି ଯାଉଛି କେତେ ଦିନ, ଭେଟ ହୋଇନାହିଁ ତୁମର ମୋହର
ତନୁ ଭବନ ! ଭାବନାରେ କି ତୁମକୁ ଛୁଇଁଛି ଦିନେ ? ଛୁଇଁନ-ଏ ବସ୍ତର ବଡ଼ ଗଧିର ।

ସେଦିନ ପ୍ରାୟ ସାଢ଼େଛଅ, ସାତଟା ବେଳେ ଆମେ ନଈକୁ ଗାଧୋଇବାକୁ ଗଲୁଁ । ସେଦିନ ମୋର ବଡ଼ ଦାଦେଇ ଗାଁରୁ ଆସିକା ଆସିଥା'ନ୍ତି । ଆଉ ଦୁଇ ତିନିଜଣ ମଧ୍ୟ ଆସିଥା'ନ୍ତି । ଆମ-ଘରେ କୂଅ ଥିଲେ ମଧ୍ୟ ନଦୀଟା ଖୁବ୍ ପାଖ ହୋଇ ଥିବାରୁ ଆମେ ସାଧାରଣରେ କୂଅରେ ନ ଗାଧୋଇ ନଈରେ ଗାଧୋଉଁ । ସନ୍ଧ୍ୟା ବେଳେ ଭୟଙ୍କର ଖରା ପରେ ଆମେ ବାଲ୍‌ଟିଧରି ନଈକୁ ବାହାରି ପଡ଼ିଲୁ । ଯିବା ପୂର୍ବରୁ, ପ୍ରାୟ ଘଣ୍ଟେ ଦେଢ଼ଘଣ୍ଟା ଆଗରୁ ଆମର ଚାକର ଟି ଲଣ୍ଠନ୍ ଓ ଗୋଟିଏ ଡିବି ମୁଁ ପୋଛି ପୋଛି କରି ସଜାଇ ଦେଲା । ତଳ ଉପର ହୋଇ ଦୁଇଶାଳ ହୋଇ ଚଳଶାଳର ଗୋଟିଏ ଘର ଅଗଣା ପଟିକୁ ଆଲୁଅ ଭାବରେ ଲଗିଥାଏ ଯେ, ଅନ୍ଧକାରରେ ଗୋଟିଏ ଦୀପ ନ ଜାଳିଲେ ସବୁଘର ଆଲୁଅ ହୋଇ ପାରିବ ନାହିଁ । ନନା (ପିତା) ତୀର୍ଥଯିବା ଆଗରୁ ଆମର ଗୋଟିଏ ପୂରା କିରୋସିନ୍ ଟିଣ କିଣା ଯାଇଥିଲା- ତାଙ୍କର ଅନୁପସ୍ଥିତ ବେଳେ ଜାଳିବା ପାଇଁ ଏକାବେଳକେ କିଣି ଦେଇଥିଲେ । କିନ୍ତୁ ସେଦିନ ପର୍ଯ୍ୟନ୍ତ ଟିଣ ଖୋଲାଯାଇ ନଥାଏ । ସେ ଦିନ ଖୋଲା-ଗଲା । ବଡ ଦଦେଇ ଖୋଲିଲେ । ଗୋଟାଏ ବୋତଲକୁ କିରୋସିନ୍ ବାହାର କରାଗଲା । ଅଗଣାଟା ଆଚ୍ଛାକରି ଗଡ଼ାଣିଆ, ସିମେଣ୍ଟ ଅଗଣା, ଟିଣ କାଢ଼ିଲାବେଳେ କିରୋସିନ୍ ତଳେ ପଡ଼ି ଯିବାରୁ ଅଗଣାର ବାଡ଼ ଆଡ଼କୁ ଯାଇଥିବା ନଳାର ମୁହଁ ପର୍ଯ୍ୟନ୍ତ ପ୍ରାୟ ଚାରିପାଞ୍ଚହାତ ପର୍ଯ୍ୟନ୍ତ କିରୋସିନ୍ ବହିଗଲା । ତା'ପରେ ସନ୍ଧ୍ୟା ହୋଇ ଆସୁଥିବାରୁ ଦୁଇଟି ଲଣ୍ଠନ୍ ଲଗାଇ ଦେଲା ଓ ନିର୍ଦ୍ଦିଷ୍ଟ

---

ଭଲ ଦିନେ ଆସିଥିଲି, ମନ୍ଦ ଦିନେ ତୁମ ପାଇଁରେ
ଭାବନା ମୋର, ତର ତୁମର ଭାବନା ମୋତେ କରଇ ଅଧୀର

ଜାଗାରେ ଝୁଲାଇ ଦେଲ । ଦାଣ୍ଡ-ଘର-କବାଟ ଭିତରୁ ପଟୁ ବନ୍ଦ କରିଦେଇ ବାଡ଼ିଆଡ଼କୁ ସମସ୍ତେ ଗାଧୋଇବାକୁ ଗଲୁଁ ।

ଋଷିକୁଲ୍ୟା ନଈରେ ଚୂଆ ଖୋଳି ଲୋକେ ପାଣି ନଅନ୍ତି । ଅଉ ଗାଧୋଇବା ପାଇଁ ଗୋଟାଏ ଗୋଟାଏ କାଠର ବା ଟିଣର କଳ ପୋତିଥା'ନ୍ତି । ଆମ ବାଡ଼-ଆଗ୍ରୁ ସିଧାଥିବା ନଦରେ ଗୃହ ଛ' ଜଣ ଗାଧେ'ଇ ଥିଲେ, ସେଥିପାଇଁ ଆମେ ଗୋଟାଏ ବଡ଼ ଚୂଆ ଖୋଳିଲୁ । ଗାଧୁଆ ପାଧୁଆ କରି ପ୍ରାୟ ଆଠଟା ବେଳେ ଘରକୁ ଫେରିଲୁ । ଆଗତେ ବଡ଼ ଦ ଦଣ୍ଡ ଆସିଥିଲ । ତାଙ୍କ ମନ୍ଦିରର ଅନ୍ୟମାନେ ଆସିଲେ ଓଁ ୮୮୦୫୦୭ ବାଲ୍ଟି ଧରି ମୁଁ ଆସିଲି ।

ଦାଦେଈ ଘର ଭିତରକୁ ପଶି ଆସିଲା ବେଳକୁ ପାଦ୍ୱାରକୁ ଝୁଣ୍ଟିଲେ । ଲଣ୍ଠନ୍‌ରେ କିରାସିନ୍ ପଡ଼ିଥିବା ସତ୍ତ୍ୱେ ଲଣ୍ଠନ୍ ଲଗାଇ ମୁଁ ଯଥା ସ୍ଥାନରେ ରଖିନାହିଁ ବୋଲି ବିରକ୍ତ ହେଲେ । ମୁଁ ଦୂରରୁ ଶୁଣିପାରି 'ଲଣ୍ଠନ୍‌ଟିକୁ ଟିକିଏ ତେଜିଦିଅ' ବୋଲି ପାଟିକରି କହିଲି । ବଉଳ ଆସି ଦେଖେ ଯେ, ଘରଯାକ ଅନ୍ଧାର । ମୁଁ ପାଟି କଲି— ଲଣ୍ଠନ୍ ଗୁଡ଼ାକ କିଏ କୁଆଡ଼େ ନେଇଗଲା' । ଅଗଣା ପଟେ ଯେଉଁ ଲଣ୍ଠନ୍ ଝୁଲାଇ ଥିଲି ତାହା ଲିଭିଯାଇ ଥିବାରୁ ଲଗାଇବା ପାଇଁ ତଳକୁ ବାହାର କରି ଆଣିଲି । ଧରିଲା ବେଳକୁ ଟିକିଏ ଉଷ୍ଣ୍ମାସ ଜଣାଗଲା । ତେଲଟି ପୂର୍ଣ୍ଣ କରି ପକାଯାଇ ଥିଲା, ତେଣୁ ଝାଙ୍କିବାରୁ ଶବ୍ଦ ହେଉନାହିଁ ବୋଲି ଘଡ଼ ଠିପିଟିକୁ ଖୋଲିଲି ।

---

ସଙ୍ଗିନୀ ! ଜୀବନ ସଙ୍ଗିନୀ ହେବ କି ମୋହର, ବର୍ଷେରେଁ ମନେ
ଥରେ, ଥରେ, ଅନେକଥର,
ରହିବା ପାଇଁ ସିନା ସଦା ଏକ ସାଙ୍ଗରେ ଦୁଃଖ ସୁଖ ସହିତର ।

ମୋତେ ଲାଗିଲା, ଯେପରି କିରୋସିନ୍ ନାହିଁ, ଆଙ୍ଗୁଠି ଭିତରକୁ ପୂରାଇ ଦେଖିଲି କିରୋସିନ୍ ନାହିଁ । ତା'ପରେ ପରେ ଅନ୍ୟ ଦୁଇଟି ଲଣ୍ଠନ୍ ଦେଖିଲି କୌଣସିଟିରେ କିରୋସିନ୍ ନାହିଁ । କିନ୍ତୁ ପ୍ରାୟ ଦ'ଘଣ୍ଟା ପୂର୍ବରୁ ଟିଣ ଖୋଲି କିରୋସିନ କାଢ଼ି ସବୁ ଗୁଡ଼ିକ ପୂର୍ଣ୍ଣ କରା ଯାଇଛି ।

ସାଙ୍ଗେ ସାଙ୍ଗେ ନାନା ଆଲୋଚନା ହେଲା । ଲଣ୍ଠନ୍‌ରେ କିରୋସିନ୍ ନାହିଁ ବୋଲି ମୁଁ ପାଟି କରିବାରୁ ସମସ୍ତେ ଆଗ ହସିଲେ କିନ୍ତୁ ପରେ ଆଶ୍ଚର୍ଯ୍ୟ ହୋଇଗଲେ । ତେଣୁ ଆଉଥରେ କିରୋସିନ୍ ପକାଇବା ପାଇଁ ବୋତଲ ଅଣାଗଲା । ବୋତଲରେ ମୋଟେ କିରୋସିନ୍ ନଥିବାରୁ ଟିଣ ଅଣାଗଲା । ଟିଣଟା ଯେପରି କି ଗୋଟିଏ ଆଙ୍ଗୁଠିରେ ଟେକି ହୋଇଗଲା । କାରଣ, ସେ ଟିଣଟିରେ ମଧ୍ୟ ଟୋପାଏ କିରୋସିନ୍ ନାହିଁ ।

ସେତେବେଳର ଅନୁଭୂତି ଏବେ ମଧ୍ୟ ମନେ ପଡ଼ିଲେ ମନରେ ଭୟ ଜନ୍ମୁଛି । ସେ ଘରର ମାଲିକ ଜଣେ କମା-ବ୍ରାହ୍ମଣ । ଗଞ୍ଜାମ ଜିଲ୍ଲାର ସୋରଡ଼ା ସ୍କୁଲରେ ସେ ଥିଲେ ଡ୍ରିଲ ମାଷ୍ଟର । ଆମେ ଏହି ଘରକୁ ଆସିବା ପୂର୍ବରୁ ଆଉ ଆଠ ଦଶ ଘର ଗୃହସ୍ଥ ଅନ୍ୟ ଏକଘରେ ଥିଲୁ । ଏ ଘରେ ଯେ ରହିଲା ବାରବାର ଭୂତ ଉପଦ୍ରବ ହେବାରୁ ଘରଛାଡ଼ି ଚାଲିଗଲା । ତେଣୁ ସେତେବେଳେ ସେ ଘରର ଭଡ଼ା ଯାହା ପ୍ରାୟ ଅଧା ଭଡ଼ାରେ ଆମେ ସେ ଘର ନେଇଥିଲୁ । ଚଣ୍ଡୀରେ ନନାଙ୍କର ବିଶ୍ୱାସ ଥିବାରୁ ସେ ଭୂତ

---

ସନ୍ଦେହ କି ଅଛି ଆଉ ? ଆମେ ଯେ ରହିଲୁଣି ଭାଇ ଭଉଣୀ ପରି
ଏହିପରି ସବୁ ଦିନ, ବାକି ଦିନ, ଯାଉ—ଯାଉ ।

ପ୍ରେତଙ୍କର ଭୟ କରନ୍ତି ନାହିଁ, ବିଶେଷରେ ପ୍ରଥମ ଘରର ସଙ୍କୀର୍ଣ୍ଣତା ଦୃଷ୍ଟିରୁ ଏ ଘରକୁ ଆସିବା ପାଇଁ ଆଦୌ କୁଣ୍ଠିତ ହେଲେ ନାହିଁ ।

ଏଠାରେ ଯେଉଁ ସମୟର ଘଟଣା କୁହା ଯାଉଛି, ତ ହାର କେତେ ବର୍ଷ ଆଗରୁ ଓ କେତେବର୍ଷ ପର ପର୍ଯ୍ୟନ୍ତ ସେଠାରେ ଅନେକଥର ହଇଜା ହୋଇଛି । ସେ ସମୟରେ ରାତ୍ରରେ ଅନେକ ଥର ଭୂତ ଉପଦ୍ରବ ସେ ଘରେ ଘଟିଛି, କିନ୍ତୁ ନନାଙ୍କ ଚଣ୍ଡୀପାଠ-ରେ ଆମେ ସମସ୍ତେ ଘରର ଏତେ ଆସ୍ଥାବାନ୍ ଯେ, ପ୍ରେତ ଧର-ଣିର ଉପଦ୍ରବକୁ ଆମେ ଡରୁ ନଥିଲୁ । ବେଳେ ବେଳେ କଳା ହୋଇଥିବା କବାଟ ଆପେ ଆପେ ଫିଟି ଯାଏ । ଆଉ ଦିନେ ଦିନେ ରାତିରେ ଗାଡ ନାଲିଆ ଆଲୁଅ ଅଗଣା ଓ ଛାଳଘରେ ପ୍ରବିଷ୍ଟ ହୋଇଗଲା ପରି ଲାଗେ ।

ଅଳ୍ପ ସମୟ ଭିତରେ ଏହି କିରୋସିନ୍ ଘଟଣା ନେଇ ପାଡ଼ା ପଡ଼ଶାରେ ଚହଳ ପଡିଗଲା । ଅନେକ ଲୋକ ଦେଖିବାକୁ ଆସିଲେ । ଭୁଲ୍‌ତରେ ଟିଣରେ ତେଲଥିଲା ବୋଲି କେହି ବିଶ୍ୱାସ କଲେ ନାହିଁ । ଆଉ କେହି କେହି କହିଲେ (ମୋ ଦଦେଈଙ୍କ ଲକ୍ଷ୍ୟରେ) ଏତ ଜଣେ ବୁଢାଲୋକ, ଏ କାହିଁକି ମିଛ କହିବେ, ଇତ୍ୟାଦି ଇତ୍ୟାଦି ନାନା କଥାବାର୍ତ୍ତା ଶୁଣିଲି । ରାତି ବହୁତ ହୋଇ ଯାଇ ଥିବାରୁ, ବୋତଲେ କିରୋସିନ୍ କିଣି ଆଣିବାକୁ ମୁଁ ଦୋକାନକୁ ଗଲି । ଆହୁରି ଦଶ ପାଞ୍ଚ ଜଣ ଅଗଣାରେ ଓ ଦାଣ୍ଡ ପିଣ୍ଡାରେ

---

ଶୂନ୍ୟ ପରାଣେ ରହିବ କେସନେ ଶୂନ୍ୟେ, ଶୂନ୍ୟେ ଅନାଇ,
ଭାବନା ମୋର ଜଗତର ସକଳ ଅମୃତ ସିନ୍ଧୁ ପାର ହୋଇ
ମିଳିବ ଲକ୍ଷ୍ମୀ ପଯ୍ୟନ୍ତ ।

କଥାବାର୍ତ୍ତା ହେଉଥା'ନ୍ତି । କୌତୂହଳରେ କେହି କେହି ଟିଣକୁ କୁଆଡେ଼ ଦେଖୁଥା'ନ୍ତି । କିରୋସିନ୍ ଧରି ମୁଁ ଆସିଲାବେଳକୁ ଆମଘରେ ଅଦ୍ଭୁତ ପାଠିତୁଣ୍ଡି ଶୁଣା ଯାଉଛି । କଅଣ ହେଲା ବୋଲି ମୁଁ ଘରେ ପଶିଲାବେଳକୁ ଶୁଣିଲି ଟିଣରେ କିରୋସିନ୍ ଉଚ୍ଛୁଳି ପଡ଼ୁଛି । ପୁଣି ଦେଖିଲି ଲଣ୍ଠନ୍‌ରେ କିରୋସିନ୍ ପୂର୍ଣ୍ଣ ହୋଇ ରହିଛି । ଆଗରୁତ ଟିଣରୁ ଲଣ୍ଠନ୍ ପାଇଁ କିରୋସିନ୍ ଛଡ଼ା ପୂରା ବୋତଲେ କିରୋସିନ୍ ବାହାର କରି ଦିଆ ଯାଇଥିଲା, ଏବେ କିନ୍ତୁ ଦେଖିଲା-ବେଳକୁ ଟିଣ ଏପରି ଭର୍ତ୍ତି ହୋଇଛି ଯେ ଆଉ ଠୋପାଏ ମଧ୍ୟ ତହିଁରେ ରହିବ ନାହିଁ । ତା'ଛଡ଼ା ଲଣ୍ଠନ୍‌ରେ ମଧ୍ୟ କିରୋସିନ୍ ଅଛି । 'ଯାହା ନ ଦେଖିବ ଦୁଇ ନୟନେ' ବୋଲି କଥା ଅଛି, ଏହା ଏକ ହି' ଆଖିରେ ଦେଖିବା ଘଟଣା ।



## (୨୨)

### ଲାଲା ନଗେନ୍ଦ୍ର କୁମାର ରାୟ

ବ୍ରିଟିଶ ବିଜ୍ଞାନ ସମିତିର ପ୍ରେସିଡେ଼ଣ୍ଟ ସର୍ ଅଲିଭର ଲଜ୍ ଓ ପ୍ରଧାନ ଡାକ୍ତର ସର୍ କନାନ୍ ଡ଼ଏଲ୍ ପ୍ରଥମ ମହାଯୁଦ୍ଧ ପରେ ମୃତ୍ୟୁପରେ ପ୍ରେତର ଅସ୍ତିତ୍ୱର ସୁସ୍ପଷ୍ଟ ପ୍ରମାଣ ପାଇ ଯେତେବେଳେ ଜଡ଼ ବିଜ୍ଞାନର ଚର୍ଚ୍ଚା ଛାଡ଼ି ଏ ଦିଗରେ ମନ ବଳାଇଲେ ଏବଂ ବଡ଼

---

ଶବ୍ଦ ନୁହେଁ, ନଶବଦ ସ୍ୱରେଁ ଡାକେ, ତୁ ସତେ ସୁନ୍ଦର,
ମୋ ପରାଣ ହ୍ଲାଦନୀ, ଚିତ୍ତ ବିମୋହିନୀ, ଅତି ମଧୁର, ମଧୁର ।

ବଡ଼ ପ୍ରାମାଣିକ ଗ୍ରନ୍ଥ ଲେଖିଥିଲେ ସେତେବେଳେ ପୃଥିବୀରେ ସବୁ ଦେଶରେ ଗୋଟାଏ ଚହଳ ପଡ଼ି ଯାଇଥିଲା । ପ୍ରାଚ୍ୟ ପାଶ୍ଚାତ୍ୟ ସବୁ ଦେଶର ବହୁ ଲୋକେ ପ୍ରେତ ବିଶ୍ୱାସ କରୁଥିଲେ ମଧ୍ୟ ଶିକ୍ଷିତ ଲୋକେ ଏହାକୁ ଅନ୍ଧ ବିଶ୍ୱାସ ବୋଲି ଉପହାସ କରୁଥିଲେ ଏବଂ ଏବେ ... ... ତଥାପି ଏହି ଚର୍ଚ୍ଚା ଦିନୁଦିନ ବ୍ୟାପକ ହେଉଅ... ... ବର୍ଣ୍ଣିତ ଘଟଣାଟି ଏହି ତତ୍ତ୍ୱର ଗୋଟିଏ ଉଦାହରଣ ... ଏକାନ୍ତ ବିସ୍ମୟ ଉଦ୍ଦୀପକ ହେଲେ ମଧ୍ୟ ପରମ ସୁକ୍ଷ୍ମ ସ... । ଘଟଣା କଟକ ସହରର ଏକ ଜନାକୀର୍ଣ୍ଣ ବଡ଼ ରାସ୍ତା ଉପରେ ... ଅବଶ୍ୟ ଏହା ପ୍ରାୟ ୩୫ ବର୍ଷ ତଳର କଥା ।

କଟକ ... ପ୍ରଧାନ ରାସ୍ତା ଉପରେ ଏଠାରେ ଶ୍ରୀ ଗଦାଧର ସାହୁଙ୍କ ୩ ମହଲିଆ ଘରଟି ଅବସ୍ଥିତ । ରାସ୍ତା ତରଫକୁ ଦୁଇଧାଡ଼ି ଘର, ମଝିରେ ... ପଛପଟକୁ ଦୋତାଲା । ଘରଟି ବର୍ତ୍ତମାନ ସୁଦ୍ଧା ସେହି ଅବସ୍ଥାରେ ଅଛି ଏବଂ ଶ୍ରୀ ଗଦାଧର ସାହୁଙ୍କର ପୁତ୍ର-ମାନେ ସେଠାରେ ... ଅଛନ୍ତି । ରାସ୍ତା ପାଖର ବଖରା ଗୁଡ଼ିକରେ କେତେ... ... ଓ ଗୋଟିଏ ବିଟର ଭିତରକୁ ଯିବାର ପ୍ରବେଶ ପଥ । ... ଦିନେ ବାହାର ଘର ଗୁଡ଼ିକ ଦୋକାନରୁ ଘିଅ ଠେକ, ଗୁଡ଼... ... ଇତ୍ୟାଦି ଜିନିଷ ଶୂନ୍ୟରେ ଉଠି ବାଟଘର ବଖରା ... ... ପିଣ୍ଡା ଟପି ଅଗଣା ଥିବା ରଉଷ ପାଖରେ ଥୁଆ ହେଲା । ... ଭାବରେ ତେଲଟିଣ ଡାଲି ଢ଼ୋକେଇ ଆଦି

---

ଯାଇଛୁ ଭାସି ... ... ନ ପାଇ
ଭାବଛୁ କେତେ, ... ... , ଜାଣୁଛି ତୁହି ?
ଜୀବନେ ସନ୍ଧାନ ... ... ତାରେ- ତେଣୁ ଖୁଣ୍ଡେ ତୋତେ ମୁଁ
ବଡ଼ ଅଧୀରେ ।

ସବୁ ଉଠି ଯାଇ ଚଉରା ପାଖକୁ ଗଲା । ଶତ ଶତ ଲୋକେ ଏହା ।
ଦେଖୁଥାନ୍ତି ଓ ଗଲା ଗଲା ବୋଲି ପାଟି କରୁଥାନ୍ତି । ଯେପରି
ଭାବରେ ଏହିସବୁ ମାଲମତା ଯାଉଥାଏ ତାହା ଦେଖି ମନେ ହେବ
ସତେ ଯେପରି କୌଣସି ଅଦୃଶ୍ୟ ବ୍ୟକ୍ତି ଏ ସବୁ ଟେକି ନେଇ
ଯାଉଅଛି । ଏ ଘଟଣା ଦିନବେଳେ ମଧ୍ୟ ଘଟି ଶତ ଶତଙ୍କୁ ଅବାକ୍
କରି ଦେଇଥିଲା । ପୁଲିସ ମଧ୍ୟ ଜଗିଥିଲା ମାତ୍ର କିଛି କାହାର କେବେ
କ୍ଷତି ଘଟି ନାହିଁ ଏପରିକି ଚୁଲି ଉପରୁ ଫୁଟନ୍ତା ଭାତହାଣ୍ଡି ମଧ୍ୟ ଉଠି
ଆସି ଚଉରା ପାଖରେ ଥୁଆ ହୋଇଥିଲା । ଥରେ ଜଣେ ପୁଲିସ
ମୁସଲମାନ ଜମାଦାର ଜୋତାପିନ୍ଧି ଚଉରା ପାଖକୁ ଯାଇ ଚିତ୍କାର
କରି ଗାଳି ଫଜିତ କଲା । ଠିକ୍ ସେତିକବେଳେ ଦୋ ମହଲା
ଛାତଉପରେ ଥିବା ଧାନଉଷା ହାଣ୍ଡିରେ ଯେଉଁ ହାଣ୍ଡିକ ପାଉଁଶ
ଥିଲା ସେ ହାଣ୍ଡିଟି ଉପରୁ କେହି ତାହା ମୁଣ୍ଡ ଉପରେ ପକାଇ ଦେଲା ।
ଜମାଦାର ତଗଡ଼ ବାଜ ହାଣ୍ଡି ତଳଟି ଭାଙ୍ଗିଗଲା ଏବଂ ସେ
ପାଉଁଶରେ ବୁଡ଼ି ଯାଇଥିଲା । ଏପରି ଘଟଣା ପ୍ରତ୍ୟହ ଏକ
ସପ୍ତାହରୁ ଅଧିକ ଚାଲିଲା । ଗୃହସ୍ୱାମୀ ବହୁତ ଚେଷ୍ଟା କଲେ ମାତ୍ର
କିଛି ଫଳ ହୋଇ ନ ଥିଲା । ଶେଷକୁ ଛତିଆ ବଟରୁ ଜଣେ
ବୁଢ଼ା ବାବାଜୀ ଆସି ରାତିଟାଏ ଛାତ ଉପରେ ରହି କିଛି ପୂଜା
କରିବାରୁ ସବୁ ବନ୍ଦ ହୋଇଥିଲା । ବର୍ତ୍ତମାନ ଶ୍ରୀ ଗଦାଧର ସାହୁଙ୍କ
ଘର ଓ ତାଙ୍କର ଯୋଗ୍ୟ ପୁତ୍ର ନାତି ରହି ଅଛନ୍ତି । ଏହି ଘଟଣା

---

ସୁଖର ଦିନ ତ ସୁଖରେ ଯିବ, ଦୁଃଖର ଦିନେ ସାଥୀ ତୁମର କିଏ
ରହିବ ?
ଯିଏ ରହେ, ସେହିଦିନ, ସେହିସିନା, ମୋ ପ୍ରାଣ ବିମୋହନ, ଏ
କଥା କାହାକୁ କହିବ ?

ପ୍ରତ୍ୟକ୍ଷ କରିଥିବା ବହୁ ବ୍ୟକ୍ତି ମଧ୍ୟ ଜୀବିତ ଅଛନ୍ତି କିନ୍ତୁ ଆଜି ପର୍ଯ୍ୟନ୍ତ ଏହି ଅଲୌକିକ ଘଟଣାର ରହସ୍ୟ ଉଦ୍‌ଘାଟିତ ହୋଇ ନାହିଁ । ସ୍ଥାନୀୟ ଲୋକେ ଏହାକୁ ଘର ବାହୁଟି ପେଶିବା ମନରେ ଗ୍ରହଣ କରିଥାନ୍ତି । ଏପରି ବ୍ୟବସ୍ଥା ଅବଶ୍ୟ ତନ୍ତ୍ର ଶାସ୍ତ୍ରରେ ଦେଖି-ବାକୁ ମିଳେ ଏବଂ ନାନା ସ୍ଥାନରେ ଏଭଳି ଘଟଣା ଘଟିବାର ଶୁଣା ଯାଇ ଥାଏ । ଢେକା ପଥର ପଡ଼ିବା, ମଇଳା ଛେଡ଼ିବା କାହାଣୀ ମଧ୍ୟ ବିରଳ ନୁହେ । ଏଥିରୁ ଅନେକ ମାନୁଷୀ କିଂୟା ତେବେ ସ୍ବର୍ଗୀୟ ଗୋପାଳ ପ୍ରହରାଜଙ୍କ ପତ୍ର ଶାଖାରେ ଜଣେ ବଙ୍ଗାଳୀ ବାବୁଙ୍କ ଘରେ ବର୍ଷାଧିକ କାଳ ମଇଳା ବାହାରିବା ସେତେବେଳେ ସମସ୍ତଙ୍କୁ ଚମକ ଲଗାଇ ଦେଇଥିଲା । ଏପରି ଘଟଣାର ବ୍ୟାଖ୍ୟା ଜଡ଼ବିଜ୍ଞାନର ଗଣ୍ଡିର ବାହାରେ ।



(୨୩)

## ଅଧ୍ୟାପକ ବଂଶୀଧର ମହାନ୍ତି

ଖରାଦିନ । କଟକ ଦୋଳ ମୁଣ୍ଡେଇ ବସାରେ ଥାଏଁ । ଖରା-ବେଳେ ସେଦିନ ଶୋଇ ପଡ଼ିଛି । ଶୋଇଲାବେଳେ ମୁଁ ସ୍ୱପ୍ନ ଦେଖୁଛି ଯେ ମୋର ଜଣେ ବନ୍ଧୁ ଆସି ମତେ ହ'ଓଟି ମଲ୍ଲୀଫୁଲ ଯାଚୁଛନ୍ତି । ଠିକ୍ ସେତିକିବେଳେ ମୋର ସ୍ତ୍ରୀ ମୋତେ ଡ଼ାକଲେ କିଏ ଜଣେ

---

ଲଗିପଡ଼ ଲଗିପଡ଼ ଆନନ୍ଦ କର ମେହନତରେ
ସେଥିହ ଆନନ୍ଦ ଦେଇ ଆମକୁ ଫଳ ଫୁଲ ସବୁ ସମ୍ଭାର ପ୍ରାଣ ପୁରାଇରେ ।

ବାହାରେ କେତେବେଳୁ ବସିଛନ୍ତି । ମୁଁ ବାହାରକୁ ଆସିଲି—ଦେଖିଲି ମୋର ଜଣେ ପୁରୁଣା ବନ୍ଧୁ । ତାଙ୍କ ସାଙ୍ଗରେ କିଛି ସମସ୍ତ କଥା ହେଲାପରେ ସେ ମୋ ହାତକୁ ବଢ଼େଇ ଦେଲେ ଗୋଟିଏ କାଗଜ । ମୁଁ କହିଲି କଣ ଯେ ? ଦେଖିଲି ଦଉଡ଼ି ମଣ୍ଟିକଡ଼ । ମୁଁ ବଡ଼ ଆଶ୍ଚର୍ଯ୍ୟ ହେଲି । ମୁଁ ତାଙ୍କୁ ଆଗରେ ସେଦିନ କହିଲି ଯେ ବେଳେ ବେଳେ ସ୍ୱପ୍ନ ସତ ହୋଇଥାଏ ।

ଆଜି ଏକଦିନର ଘଟଣା । ସେହିବର୍ଷ ସେହି ବର୍ଷାର କଥା । ମୁଁ କୋଉ ଜାଗା ସ୍ୱପ୍ନ ଦେଖୁଛି ଯେ ପାଖ ପୋଖରୀରେ ଜାଲରେ ଗୋଟାଏ ଖୁବ୍ ବଡ଼ ମାଛ ପଡ଼ିଛି । ବଡ଼ ମାଛଟାଏ ! ନିଦ-ଭାଙ୍ଗିଗଲା । ମୁଁ ସ୍ୱପ୍ନର କଥା ସ୍ତ୍ରୀଙ୍କୁ କହିଲି । ଭାବିଲି, ଯାଏଁ ମୋର ବନ୍ଧୁଙ୍କୁ ଡାକିଆଣେ । ସେ ଆସି ଜାଲ ପକାନ୍ତୁ । ହୁଏତ ସ୍ୱପ୍ନ ସତ ହୋଇ ପାରେ ।

ସଞ୍ଜବେଳକୁ ବନ୍ଧୁ ଜାଲ ନେଇ ଆସି ଏଣେ ତେଣେ ୧୦-୧୨ ଖେପା ପକେଇଲେ । ସେପରି କିଛି ଫଳ ହେଲା ନାହିଁ । ନିରାଶ ହୋଇ ଫେରିଆସିବା ବେଳେ ତେଣ୍ଡା ଖାଲ ପାଖରେ ଜାଲ ଖେପାଏ ପକାଇଛନ୍ତି, ଝଣଟାଏ ବଡ଼ ଶବ୍ଦ ଶୁଭିଲା । ଜାଲ ଟାଣି-ଆଣି ଦେଖିଲେ ଦେଖିବେ କଣ । ଯେଉଁ ମାଛ ସେଥିରେ ପଡ଼ିଥିଲା ଆଶ୍ଚର୍ଯ୍ୟ ହେବାର କଥା । ସେ ମାଛ କେମିତି ସେ ଭଉଁରି ଜାଲରେ ରହିଲା । ୭୮ ସେର ଓଜନ ଏକ ବିରାଟ ରୋହିମାଛ । ସେ ଖୁବ୍

---

ଏତେ ଅଦୃଶ୍ୟ ଶକ୍ତି, ଏତେ ବିଚିତ୍ର କଥା ଅଛି ଜଗତେ
ଜାଣିଲି ଅବା ମୁହିଁ କେତେ ? କିନ୍ତୁ ଯେତିକ ଜାଣିଛି ଯାହାକୁ,
ସେମାନେ ମୋର ପ୍ରାଣ ସଖା ସତେ ।

ବଳବାନ୍ ଲୋକ । ଜାଲ ସୁଦ୍ଧା ଏ ମାଛକୁ କୁଣ୍ଢାଇ କୂଳରେ ପହଞ୍ଚିଲା ବେଳକୁ ସେ ଅଣ ନିଶ୍ୱାସୀ ହୋଇ ଯାଇଥାନ୍ତି ।

ମୁଁ କହିଲି ମୋର ସ୍ତ୍ରୀଙ୍କୁ ଯେ ସ୍ୱପ୍ନ ବେଳେ ବେଳେ ସତ ହୋଇଥାଏ । ଦେଖିଲ ଘଟଣା ଠିକ୍ ଘଟିଛି କି ନାହିଁ ।



## (୨୪)

**ଶ୍ରୀ ସଦାଶିବ ମିଶ୍ର**

ଆଜକୁ ୨୯ ବର୍ଷ ତଳର କଥା । ମୁଁ ସେତେବେଳେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ପୂର୍ବରୁ ମାନ୍ଦ୍ରାଜ ପ୍ରଦେଶର ଯେଉଁ ପାରଳାଖେମଣ୍ଡି ତାଲୁକା ଥିଲା ତାହାର ଅନ୍ତର୍ଭୁକ୍ତ ଚନ୍ଦ୍ରା ବମିଲି ନାମକ ଗୋଟିଏ ଗ୍ରାମରେ ଥିଲି । ବର୍ତ୍ତମାନ ଏହି ଗ୍ରାମଟି ପାରଳା ମହାରାଜାଙ୍କର ଇଷ୍ଟେଟ ମଧ୍ୟରେ ଥିଲେ ମଧ୍ୟ ଆନ୍ଧ୍ର ଷ୍ଟେଟରେ ଅଛି ଏବଂ ଚିକାକୋଲ ରୋଡଠାରୁ ହିରମଣ୍ଡଳଂ ଦେଇ ଆନ୍ଧ୍ର ପ୍ରଦେଶର ବଂଶଧାରା ନଦୀ କୂଳରେ ଥିବା ବାତଲ୍ଲ ନାମକ ଗୋଟିଏ ପେଣ୍ଠ ଜାଗାକୁ ଯାଇଥିବା ସଡ଼କର ପାର୍ଶ୍ୱରେ । ଏହି ବାତଲାଠାରେ ବଂଶଧାରା ନଦୀ ପାର ହେଲେ ବର୍ତ୍ତମାନ ପାରଳା-ଖେମଣ୍ଡି ତାଲୁକାରେ ଥିବା ବାରଣସୀ ।

---

ଅମିକ ଯିବ ଜୀବନର ଭ୍ରମ ତୁମ ଠାରେ ?
ତୁମେ ଯେ ରହିଲ ଏକାକିନୀ—ଶକତ ଥିଲା ତୁମର ଜନନୀର
ତୁମେ କି ରହିଲ ଚିର ଏକାକିନୀ ? ମହାକବି' ହାଣ ପୁଲକିନ !

ଉପରୋକ୍ତ ଚନାଦମିଲ ଗ୍ରାମରେ ମୋତେ ତତ୍କାଳୀନ ମାନ୍ଦ୍ରାଜ ସରକାରଙ୍କର ଇଷ୍ଟେଟ ଲ୍ୟାଣ୍ଡ ଆକ୍ଟ ଅନୁଯାୟୀ ହେଉ-ଥିବା ସେଟଲମେଣ୍ଟ କାର୍ଯ୍ୟରେ ପ୍ରାୟ ୩ମାସ ରହିବାକୁ ପଡ଼ିଥିଲା । ଗ୍ରାମରେ ପହଞ୍ଚିବା ପରେ ଗ୍ରାମବାସୀ ଏଲେୟା ନାମକ ଜଣେ କଳଙ୍କ କୁମୁଟି ଭଦ୍ରଲୋକଙ୍କ ଘରେ ମୋର ରହିବାର ବନ୍ଦୋବସ୍ତ କରିଦେଲେ । ଏଇଟି ସେ ଭଦ୍ରଲୋକ ଓ ନିଜେ ରହିବା ଘର । ଘରଟି ବଡ଼ଘର । ପୂର୍ବ ପଶ୍ଚିମରେ ୩ଟି ଖୁବ ବଡ ବଡ଼ ବଖରା । ଦକ୍ଷିଣପଟ ଅଗଣାରେ ତାଙ୍କର ରନ୍ଧାଘର, ଗୁହାଳ ପ୍ରଭୃତି ଉତ୍ତର ପଟେ ଗୋଟିଏ ଉଚ୍ଚ ଇଟା ପାଚେରୀ ଏହି ପାଚେରୀ ମଧ୍ୟରେ ଗ୍ରାମର ସଦର ରାସ୍ତା ବା ଦାଣ୍ଡକୁ ଆସିବା ସକାଶେ ଗୋଟିଏ ଦୁଆର, ଏହି ଦୁଆରର ଠିକ ସାମନାରେ ସେହି ଭଦ୍ରଲୋକଙ୍କର ୨ ବଖରା ଚୁଳଘର । ଏ ଘରଟି ମଧ୍ୟ ସେମାନେ ମୋତେ ସ୍ୱେଚ୍ଛାରେ କରି ଖାଇବା ପିଇବା ସକାଶେ ଦେଇଥାନ୍ତି । ମୋତେ ଯେଉଁ ସରକାରୀ ଚପରାଶିଟି ଦିଆ ଯାଇଥାଏ, ସେ ମୋ ପାଇଁ ରାନ୍ଧିଦିଏ ଏବଂ ସେଇ ଘରେ ରହେ ।

ଘରର ପଶ୍ଚିମପଟ ୧ବଖରାଟି ଗ୍ରାମବାସୀଙ୍କ ଅନୁରୋଧରେ ଏଓଲେୟା ମୋତେ ରହିବାକୁ ଦେଇଥିଲେ । ସମୁଦାୟ ଘରଟି ଅର୍ଥାତ୍ ୩ ବଖରା ଯାକ ଖପୁରୀ ଛାଳ ଓ ମଜବୁତ ଇଟା, ଚୂନ କାନ୍ଥ ବଖରା ଗୁଡ଼ିକର ଉତ୍ତର ଦକ୍ଷିଣ ଉଭୟ ପାଖରେ ପ୍ରଶସ୍ତ ବାରନ୍ଦା,

---

ମୁଁ ଆସି ପହଞ୍ଚିଲି ମୋ ଲକ୍ଷ୍ୟ ପଥେ
କେତେ ଆନନ୍ଦ କହି ନୁହଇ ସତେ, ଜୀବନ ସତ୍ୟ
ନୁହେଁ ମହା ଶୂନ୍ୟ ମିଥ୍ୟା, ଅପୂର୍ବ ଅଟେ ଦାନ ଗ୍ରହି ।

ଉକ୍ତ ପଶ୍ଚିମପଟ ବଖରାଟି ମଧ୍ୟ ପ୍ରଶସ୍ତ, ସେଇ ଘରେ ମୁଁ ରହିବାର ପ୍ରାୟ ୧ ମାସ ପରେ ଦିନେ ରାତିରେ ମୁଁ ଶୋଇଥିବା ଅବସ୍ଥାରେ ସ୍ୱପ୍ନ ଦେଖିବା ପରି ଜଣେ ସଦ୍ୟସ୍ନାତ କୌଷେୟବସ୍ତ୍ର ପରିହିତ ବୃଦ୍ଧ ମୋ ଆଗରେ ଆସି ଠିଆ ହେଲେ, ସାଧାରଣତଃ କଳିଙ୍ଗ କୁମୁଟିମାନେ ବ୍ରାହ୍ମଣ ନ ହେଲେ ମଧ୍ୟ ଗୋଟିଏ ପଇତା ପକାନ୍ତି ଏବଂ ସ୍ନାନ କରି ସାରିବା ପରେ ନୈଷ୍ଠିକ ବ୍ରାହ୍ମଣମାନଙ୍କପରି କପା-ଳରେ ଭସ୍ମ, ସିନ୍ଦୂର ବା ଗୋରଚନା ଚିତା କରନ୍ତି, ମୋର ସ୍ୱପ୍ନ-ଦୃଷ୍ଟ ବୃଦ୍ଧ ମଧ୍ୟ ସେହିପରି କୌଷେୟ ବସ୍ତ୍ର ପରିଧାନ ପୂର୍ବକ କପାଳରେ ଭସ୍ମର ପୁଣ୍ଡ୍ରଖିକ କାଟି ତନ୍ମଧ୍ୟରେ ଗୋଟିଏ ବଡ଼ ଆକାରର ସିନ୍ଦୂର ଟୋପି ଧାରଣ କରିଥିଲେ । ଦୁଇ ବାହୁରେ ଭସ୍ମପୁଣ୍ଡ୍ରଖିକ ପ୍ରଚ୍ଛନ୍ନ ଭାବରେ ଦେଖା ଯାଉଥିଲା । ଅଣ୍ଟାତଳକୁ ମଠାଉପରେ ଗୋଟିଏ ଗୋଲାକାର ରୂପା ସୂତା ଥିଲା ଓ ସେଥିରେ ବାନ୍ଧି ହୋଇଥିବା ଅଟଚି ରଙ୍ଗ ସୂତାରେ ପେଣ୍ଡାଏ ଚାବି ଦୋହଲୁଥିଲା । ଦୁଇ କଚଟିରେ ଦୁଇଟି ସୁନାର ଖଡ଼ୁ । ଏହି ମୂର୍ତ୍ତି ମୋ ନିଦ୍ରିତାବସ୍ଥାରେ ଖଟ ପାଖରେ ଦଣ୍ଡାୟମାନ ହୋଇ ଓ ଖୁବ୍ କର୍କଶସ୍ୱରରେ ତେଲୁଗୁ ଭାଷାରେ କହିଲା ହେ, ତୋରତ ଭାରି ସାହସ, ଏଠାରେ କାହିଁକି ଶୋଇଛୁ ? କାହିଁକି ଶୋଇଛୁ, କାହିଁକି ଶୋଇଛୁ ଜାଣିନାହୁଁ ଯେ ମୋର ଘର" ଏତିକିବେଳେ ମୋ ନିଦ ଭାଙ୍ଗିଗଲା, କିନ୍ତୁ ଆଶ୍ଚର୍ଯ୍ୟର କଥା, ନିଦ ଭାଙ୍ଗିବାପରେ ମୁଁ ଦେଖିଲି ମୋ ଲଣ୍ଠନଟି ଧପ୍ କରି ଲିଭିଗଲା, ଫଳତଃ ଘରଟା ଅନ୍ଧାର ହୋଇଗଲା । ଘରଟା ଗାଢ଼ ଅନ୍ଧକାରାଚ୍ଛନ୍ନ ହୋଇଥିଲେ ମଧ୍ୟ ସେଇ

---

ଅସଂଖ୍ୟ ଜୀବନ ଭିତରେ ମୋର ମାୟା କେତେକ ସାହିତେ
ସେହିମାନେ ମୋ ଚିତ୍ତ ଦ୍ରବିକାରି ଆନନ୍ଦ ଅନୁପମ ଦିଶେ ସତେ ।

ମୂର୍ତ୍ତି ନିଦ୍ରିତାବସ୍ଥାରେ ଯେପରି ରୂପରେ ଦେଖା ଦେଇଥିଲି ଅବିକଳ
ସେହିପରି ଦିଶୁଥିଲା ଏବଂ "ଇଠେଇଁ କାହିଁକି ଶୋଇଛୁ, ଭାଧ୍ୱ କି
ଶୋଇଛୁ" ବୋଲି ଜିଜ୍ଞାସୁଭାବରେ କହି କହି ସେ ମୋ ନିକଟରୁ
ଅପସାରିତ ହୋଇ ଗୋଟିଏ କଣରେ ଲୀନ ହୋଇଗଲା । ସେ ଯେଉଁ
ବିକଟାଳ ମୂର୍ତ୍ତି ଓ କର୍କଶ ସ୍ୱର, କାହିଁକି ଶୋଇଛୁ ଇଠେଇଁ ବୋଲି
କହି କହି ଘରର ଗୋଟିଏ କଣରେ ଲୀନ ହୋଇଯିବା ଦୃଶ୍ୟ ତାହା
ଆଜି ମଧ୍ୟ ମୋ ମନରେ ପଡ଼ିଲେ ଦେହ ଶୀତେଇ ଉଠୁଛି ଓ ତୁମ
ଠାଙ୍କୁର ଉଠୁଛି । ତା ପରେ ମୋର ଖୁବ ଭୟହେଲା । ସନ୍ଧ୍ୟାରୁ
ଶଲ୍ଲାର ଉପରେ କମ୍ପୁଥାଏ ଓ ଗାଲି ବୋଲି ଯାଉଥାଏ । ମୁଁ
ଚିତ୍କାର କରି ଏଲେୟ୍ସା ଏଲେୟ୍ସା ବୋଲି ଡାକିଲି । ଏଲେୟ୍ସା ଓ
ତାଙ୍କ ପରିବାରର ଅନ୍ୟମାନେ ଉକ୍ତ କୋଠରୀର ପୂର୍ବପଟ
ବଖରାରେ ଶୋଇଥିଲେ, ମୋ ପାଟି ଶୁଣି ସେମାନେ କବାଟ ଖୋଲି
ଦୌଡ଼ି ଆସିଲେ ଓ ମୁଁ ଶୋଇଥିବା କୋଠରୀର କବାଟରେ
ଆଘାତ କଲେ ମାତ୍ର ଦୁଆର ବନ୍ଦ ଥିବାରୁ ସେମାନେ ଭିତରକୁ
ଶୀଘ୍ର ଆସି ପାରିଲେ ନାହିଁ । ମୁଁ ଏତେ ଭୟ ବିହ୍ୱଳହୋଇ ଚିତ୍କାର
କରୁଥିଲି ଯେ ସେମାନଙ୍କର ଡାକ କୋଳାହଳ ମୋତେ ଶୁଣା ଯାଉ
ଥାଏ ମାତ୍ର ଶେଯରୁ ଉଠି କବାଟ ଖୋଲି ପାରୁ ନ ଥାଏ । ଘର
ତମାମ ଗାଢ଼ ଅନ୍ଧାର, ଉପରୋକ୍ତ ମୂର୍ତ୍ତି ମଧ୍ୟ ଗୋଟିଏ କଣରେ
ଠିଆ ହେଲା ପରି ଦିଶୁଥାଏ । କିଛିକ୍ଷଣ ପରେ ମୁଁ ପ୍ରକୃତିସ୍ଥ
ହୋଇ କବାଟ ଖୋଲିଲି । ଏଲେୟ୍ସା, ତାଙ୍କର ମା ଓ ମାଉସୀ ଘର
ଭିତରକୁ ପଶି ଆସି ମୋତେ ଭୟ ନାହିଁ, ଭୟ ନାହିଁ କହି ଧରି

---

ଅଧିରାଜ, ବିରାଜ, ତୁମର ଭିତରେ ମୁଁ ପାଏ ମୁ ରୁଜ;
ତୁମେତ ଶତ କଣିକା ଜଗତ ଭରିବ ଆଲୋକ ।

ଚକୋଇଲେ, ତା ପରେ ତକଆତଙ୍କ ମୋର ହୃଚ୍ଛଲଇଠଠା କାଢି
ଲଣ୍ଠନଟା ଲଗାଇଲି । ଆଶ୍ଚର୍ଯ୍ୟର କଥା, ଦେଖିଲି ଲଣ୍ଠନରେ
ଯଥେଷ୍ଟ ତେଲ ଅଛି ଓ ବତି ମଧ୍ୟ ଠିକ ଅଛି । ସୁତରାଂ ଜର୍ମାନୀ
ତିଆରି ଭଲ ଲଣ୍ଠନଟା ଏପରି ଭାବରେ ଲିଭି ଯିବାର କୌଣସି
କାରଣ ମୁଁ ଭାବି ପାରିଲି ନାହିଁ । ତା ପରେ ଏଲେସ୍ପା, ତାଙ୍କ ମା
ଓ ମାଉସୀ କଣ ହେଲା ବୋଲି ମୋତେ ପଚାରିଲେ ମୁଁ ଶୋଇ-
ଥିଲି । ଗୋଟେ କଣ ଦେଖିଲି ବୋଲି କହିଥିଲି ମାତ୍ର ସେ ମୂର୍ତ୍ତିର
ସବିଶେଷ ବିବରଣୀ ଦେଇ ନଥିଲି, ସେ ଭଦ୍ରଲୋକଙ୍କର ମା ଓ
ମାଉସୀ ମୋଠାରୁ ବୟସରେ ଯଥେଷ୍ଟ ବଡ଼ ଥିବାରୁ ବାତ୍ସଲ୍ୟ ପ୍ରକାଶ
କରି ମୋତେ "କିଛି ଭୟ ନାହିଁ ପୁଅ, ଆମ ଘରଟା, ଭୟ କଣ ଅଛି"
ବୋଲି କହି ଆଶ୍ୱାସନା ଦେଲେ, ବୋଧ ହୁଏ ସ୍ୱପ୍ନ ଦେଖିଲୁ କିଛି
ଭୟ ନାହିଁ । ହଉ, ତୋର ଭୟ ହେଉଥିଲେ ଆ ଆମ ସଙ୍ଗେ ।
ଆରବଖରେ ଶୋଇବୁ ବୋଲି ମଧ୍ୟ କହିଲେ । ମୁଁ ସେତେ-
ବେଳ ପର୍ଯ୍ୟନ୍ତ ଘଟଣାଟା କଣ ହୋଇପାରେ ଭାବି ପାରୁ ନ ଥିବାରୁ
କିଛି କହି ପାରିଲି ନାହିଁ । ବିଶେଷତଃ ମୁଁ ତାଙ୍କ ଘରେ ଗୋଟିଏ
ପରିବାରରେ ରହି ଚଳାଲପଣ ଚଳୁଥାଏ । ସେମାନେ ସମସ୍ତେ
ତେଲିଙ୍ଗା ଲୋକ, ଓଡ଼ିଆ କିଛି ବୁଝନ୍ତି ନାହିଁ, ଏପରି ଗୋଟିଏ
ଭୟ ଦେଖିଲି ବୋଲି କହିଲେ କାଳେ ସେମାନେ ତାଙ୍କ ଘରର
ଗୋଟେ ଦୁର୍ନାମ ଶୁଣିଲେ କଣ ଭାବିବେ ଏହା ଭାବି ମୁଁ ଆଉ
ବିଶେଷ କିଛି ନ କହି ଏଲେସ୍ପାଙ୍କର ପ୍ରସ୍ତାବରେ ବାରନ୍ଦାରେ ସେ
ଓ ମୁଁ ଏବଂ ମୋର ପିଅନ ସମସ୍ତେ ମିଶି ଶୋଇବାପାଇଁ ରାଜି

---

ଛାୟା ଲୋକ, ମାୟା ଲୋକ ଘେରା ଏ ଜୀବନ
ଛାୟା ମାୟା ଭିତରେ ଆଲୋକ କଢ଼ିବ ଆନନ୍ଦର ପରିପୂର୍ଣ୍ଣ ।

ହେଲି । ଘଣ୍ଟାଟି କାଢ଼ି ଦେଖିଲି ଯେ ରାତ୍ର ପ୍ରାୟ ୩ଟା ହୋଇଛି, ତେଣୁ ଆଜି ଅଳ୍ପ ରାତ୍ର ଅଛି ବୋଲି ଭାବି ବାରନ୍ଦାରେ ଶୋଇଲି । ମାତ୍ର ମୋତେ ଆଉ ନିଦ ହେଲା ନାହିଁ, ତା ପର ଦିନ ଅତି ପ୍ରତ୍ୟୁଷରୁ ମୁଁ ଗ୍ରାମର ଯେଉଁ ପଟକୁ ସେ ଦିନ ଜମି ଦେଖିବାକୁ ଯିବାର ଥିଲି ସେ ସବୁ ଜମିର ସଂଯୁକ୍ତ ରଯ୍ୟତମାନେ ଆସି ହାଜର ହେଲେ । ସେ ଗ୍ରାମର କାର୍ଯ୍ୟୀ, କରଣ ଓ ଚଳିଆର (ଚୌକିଦାର) ମଧ୍ୟ ଆସିଲେ । ଏହାହିଁ ମୋର Settlement Inspector ଭାବରେ ଦୈନନ୍ଦିନ କାର୍ଯ୍ୟ, ମୁଁ ସେମାନଙ୍କ ସହିତ ଜମି ଉପରକୁ ଯାଇ ମାପ, ଚୂପ ଇତ୍ୟାଦି ତନଖି କରି ସ୍ୱତ୍ୱାଧିକ୍ଷ, ଭୂମିର ପ୍ରକାର ଭେଦ ଇତ୍ୟାଦି ସମ୍ବନ୍ଧରେ ଲେଖିବାର କଥା ମାତ୍ର ମୁଁ ଜମି ଉପରକୁ ସେ ଦିନ ଯିବି ନାହିଁ ବୋଲି କହି ସେମାନଙ୍କୁ ଫେରାଇ ଦେଲି । ପୂର୍ବ ରାତ୍ରିର ଘଟଣା ସମ୍ବନ୍ଧରେ କିଛି କହିଲି ନାହିଁ, କାରଣ ପୂର୍ବ ରାତ୍ରର ଘଟନାରେ ମୋ ମନରେ ଯଦିଓ କୌଣସି ଭୂତ, ପ୍ରେତର ଆଶଙ୍କା ହେଉଥାଏ, ତଥାପି ସେ ସମୟ ପର୍ଯ୍ୟନ୍ତ ମୁଁ ଭୂତ ପ୍ରେତ ସମ୍ବନ୍ଧରେ ବିଶ୍ୱାସ ନ କରୁଥିବାରୁ ହୁଏତ ସ୍ୱପ୍ନହିଁ ହୋଇଥିବ ବୋଲି ଭାବି ସେ ସମ୍ପର୍କରେ ଆଉ ଟିକିଏ ଅଭିଜ୍ଞତା ହାସଲ କରିବା ଉଦ୍ଦେଶ୍ୟରେ ତୁନି ରହିଲି । ରଯ୍ୟତମାନଙ୍କୁ Record work କରିବି ବୋଲି କହି ଫେରାଇ ଦେଲି । ମନରେ କିନ୍ତୁ ଯଥେଷ୍ଟ ଭୟ ହେଉଥାଏ । ଗ୍ରାମବାସୀ ସମସ୍ତେ ତେଲୁଗୁ । ମୋର ଚପରାଶିଟିକୁ ଛାଡ଼ିଦେଲେ ଆଉ କାହା ସହିତ ଓଡ଼ିଆରେ ପଦେ କଥା କହିବାର ଅବକାଶ ନ ଥାଏ । ଏପରି ଅବସ୍ଥାରେ ମୁଁ କିଛି ଭବିଷ୍ୟତ ପନ୍ଥା

---

ମୁଁ ଅନନ୍ତ ଅସୀମ ସତ୍ତା, ଭୁଲିଯାଏ ଏହି କଥା ବାର ବାର
ମାତ୍ର ତୁମେ ସତ୍ୟ, ଚିର ଉଜ୍ଜ୍ୱଳ, ତୁହିତ ତୁମେ ଚିର ମମ ଅନ୍ତର ।

ଠିକ୍ କରି ପାରୁ ନ ଥିଲି, କାରଣ ସେ ଠାଁରେ ମୋର ପ୍ରାୟ ଆଉ ୧ ଦିନର କାମ ଥିଲା, ସେ ଘରଟି ଛାଡ଼ି ଦେଲେ ଗାଁ ମଧ୍ୟରେ ଆଉ ସେପରି ଗୋଟିଏ ସୁବିଧାଜନକ ଘର ପାଇବାର ଆଶା ନ ଥାଏ ।

ତେଣୁ କାହାକୁ କିଛି ନ କହି ସକାଳୁ ଗାଧୋଇ ସାରି ମନରେ ଗୋଟିଏ ଦମ୍ଭ ଆଣିବା ଉଦ୍ଦେଶ୍ୟରେ ମୋ ପଇତାଟା ବଦଳାଇ ଦେଇ ଗୋଟିଏ ନୂଆ ପଇତା ବିଧିପୂର୍ବକ ମନ୍ତ୍ରଦେଇ ଲଗାଇଲି, ସେଦିନତମାମ କିଛି ଅନ୍ୟ କାମ କରି ବଗଳାସ୍ତୋତ୍ର, ଚଣ୍ଡୀର ଅର୍ଗଳ, କବଚ ଇତ୍ୟାଦି କେତେକାଂଶ ଶ୍ରୀମଦ୍ଭାଗବତ୍ ଗୀତାର ବିଶ୍ୱରୂପ ଦର୍ଶନ ଯୋଗ ଅଧ୍ୟାୟ ବଡ଼ ପାଟି କରି ଆବୃତ୍ତି କଲି । ଏପରି ଭାବରେ ଦିନଟିଯାକ ପ୍ରାୟ ଶୁଦ୍ଧପୂତ ଭାବରେ ରହି ସନ୍ଧ୍ୟା କରି ଗାୟତ୍ରୀ ମନ୍ତ୍ର ଜପ କଲି । ମୋର ବୟସ ସେତେ-ବେଳେ ପ୍ରାୟ ବ ୩୩, ୩୪ ବର୍ଷ । ମନରେ ସାହସ ଓ ଖୁବ୍ ଦମ୍ଭ ଥାଏ, ପୂର୍ବ ରାତିର ଘଟଣା ସ୍ୱପ୍ନ ନ ହୋଇ ଭୂତ ବା ପ୍ରେତ ଯାହା ହୋଇଥିଲେ ମଧ୍ୟ ମୋତେ କିଛି କରି ପାରିବ ନାହିଁ ବୋଲି ସାହସ ବାନ୍ଧିଲି । ଗୋଟେ ନୂଆ ଅନୁଭୂତି ହେବା ଆଶାରେ ଏକପ୍ରକାର ଉଚ୍ଛୃଙ୍ଖଳ ହୋଇ ଉଠିଲି । ମୋର ଏ ସବୁ ଦେଖି ଏଲେୟାର ମା ଓ ମାଉସୀ ହସୁଥାନ୍ତି ଏବଂ ବାବୁ କାଲି ରାତିରେ ସ୍ୱପ୍ନ ଦେଖି ଭୀତ ହୋଇ ଭୂତ ପ୍ରେତ କଣ ସେ ଘରେ ଅଛି ଭାବି

---

ପ୍ରହ୍ଲାଦ ଛହ୍ଲାଦ ତୁମେ ଆହ୍ଲାଦ ଦାୟକ
ଏ ମନରେ ଖେଳାଉଛ କେତେବାର ଅପାର ପୁଲକ ।
ଆନନ୍ଦର ଖଣି ତୁମେ, ଆଲୋକର ଖଣି, ନାହିଁ ତହିଁ ଅନ୍ଧାର
ତୁମେତ ବିପୁଳ ପୁଲକ ଦାମ-ଧନ୍ୟ ମୁଁ ଧନ୍ୟ ପ୍ରାଣୀ ତୁମରେ ପ ଇ

ଏଠାରେ କରୁଛନ୍ତି ଆଜ ଦିନ ତମାମ ବୋଲି କହି ବ ରମ୍ବାର ମୋପାଖକୁ ଆସୁଥାନ୍ତି ।

ସନ୍ଧ୍ୟା ହେବାରୁ ମୁଁ ମୋ ଚପରାଶୀକୁ ଶଯ୍ୟା ପ୍ରସ୍ତୁତ କରି ଦେଇ ଖାଇ ସାରି ମୋ ପାଖରେ ସେଇ ବଖରାରେ ଶୋଇବାକୁ କହିଲି ମାତ୍ର ଅନ୍ୟ କୌଣସି ସୂଚନା ଦେଲି ନାହିଁ । ରାତି ପ୍ରାୟ ୯ଟା ହେବାବେଳେ ଆମେ ଦୁହେଁ ଖ ଇସାରି ଶୋଇବାକୁ ଆସିଲୁ, କ୍ରମେ ରାତି ୧୦ଟା ୧୧ଟା ବେଳକୁ ଗାଁ ଶୂନଶାନ ହୋଇଗଲା । ଏଠିଲୋକମାନଙ୍କର ପରିବାର ଲୋକେ ସାଧାରଣତଃ ରାତି ଟା ଭିତରେ ପ୍ରତିଦିନ ଶୋଇ ପଡ଼ନ୍ତି । ସେ ଦିନ କିନ୍ତୁ ସେମାନେ ମୁଁ ଘର ଭିତରେ ଦୁଆର ଦେଇ ଶୋଇବା ପର୍ଯ୍ୟନ୍ତ ଶୋଇ ନଥିଲେ ଏବଂ ଉଠୁଥିଲେ ତାଙ୍କ ସେମାନେ ଶୋଇବା ପରିବେଶ ଅନୁକୂଳ କରିବା ସଙ୍ଗେ ସଙ୍ଗେ କିଛି ଭୟ ନାହିଁ ନିଶ୍ଚିନ୍ତରେ ଶୁଅ ବୋଲି ଆଶ୍ୱାସନା ମଧ୍ୟ ଦେଉଥାନ୍ତି. ସେମାନଙ୍କର ସେ ବ୍ୟବହାର ମୋ ସହିତ ଚଳଣି ଦେଖି ସେମାନେ ହୁଏତ କିଛି ଆଗରୁ ଜାଣିଛନ୍ତି. ମୋତେ କହୁନାହାନ୍ତି । ସତେ କଣ ମୁଁ ଗତ ରାତିରେ ଦେଖିବା ମୂର୍ତ୍ତି କୌଣସି ଭୂତ ହେତ ଇତ୍ୟାଦି ଆଶଙ୍କା ମଧ୍ୟ ହେଉଥାଏ । ତଥାପି ମୁଁ ବିଶେଷ ଆଗ୍ରହୀ ହୋଇ ପ୍ରକୃତ ଘଟଣାଟା କଣ ଏହା ଜାଣିବା ସକାଶେ କୌଣସି ଭ୍ରୂକ୍ଷେପ ନ କରି ଶୋଇବାକୁ ଆରମ୍ଭ କଲି । ଚପରାଶିଟି ମଧ୍ୟ କାହିଁକି ସେଦିନ ତାକୁ ସେ ଘରେ ଶୋଇବାକୁ ଡାକିଲି ବୋଲି ମନ ମନ ପଚାରୁ ଥାଏ । ମୁଁ ତାକୁ ଏକୁଟିଆ ଶୋଇବାକୁ ଭୟ

---

ଆକାଶର ଅନନ୍ତ ଅସୀମ ସତ୍ତା ଭିତର ଦେଇ ଗତିକରେ ଚାରି ମୁହଁ ମୁଁ ତ ଶତକଥା, ସମଗ୍ର ବିଶ୍ୱ ଆଲୋକିତ ହୋଇପାରେ ମୋ ଦେଇ

ହେଉଛି ବୋଲି କହିବାରୁ ସେ ଉପହାସ କଲା । କୌଣସିମତେ ମୁଁ ତାକୁ ସମ୍ଭୁଜାଇ ଦେଇ ଶୋଇବାକୁ କହିଲି । ସେ ମଧ୍ୟ ଅଳ୍ପ ସମୟ ମଧ୍ୟରେ ଶୋଇପଡ଼ିଲା ଓ ମୁଁ ପୂର୍ବ ରାତି ଅପେକ୍ଷା ଟିକଏ ବେଶି ଜୋରରେ ଲଣ୍ଠନଟା ଜାଳି ଦେଇ ଶୋଇଲା ପରି ଛଳନା କରି ଖଟରେ ପଡ଼ି ରହିଲି । ସେତେବେଳେ ମୋ ହୃତପିଣ୍ଡର ସ୍ପନ୍ଦନ ପରୀକ୍ଷା କରିଥିଲେ ହୁଏତ ଯେ କୌଣସି ଡାକ୍ତର ଅଳ୍ପ ସମୟ ମଧ୍ୟରେ ମୃତ୍ୟୁ ଅବଶ୍ୟମ୍ଭାବୀ ବୋଲି କହିଥାନ୍ତା । ମୋ ସମୁଦାୟ ଶରୀରରୁ ଗମ୍ ଗମ୍ ଝାଳ ବହି ଯାଉଥାଏ ।

ଘଟଣାର ସତ୍ୟାସତ୍ୟ ଜାଣିବା ସକାଶେ ମୋର ଯେଉଁ ଉଦ୍ଦାମ ଉତ୍ସାହ ତାହାହିଁ ମୋତେ ବଳ ଦେଉଥିଲା ବୋଲି ମୋର ବର୍ତ୍ତମାନ ଧାରଣା ହେଉଛି । ମୁଁ ଖଟ ଉପରେ ପଡ଼ି ରହିବାର ପ୍ରାୟ ଘ -୨ଣ୍ଟା ପରେ ତପରଣିଟି ସେତେବେଳେ ଗାଢ଼ ନିଦ୍ରାରେ ଅଚେତ ହୋଇଗଲା ତା'ପରେ ପୂର୍ବ ରାତିର ଅବିକଳ ସେଇ ମୂର୍ତ୍ତି ପୁନ-ର୍ବାର ମୋ ଖଟ ପାଖରେ ଆସି ଠିଆ ହେଲା । ମୁଁ ତ ନିଦରେ ଶୋଇ ନଥିଲି । ଶୋଇଲା ପରି ଛଳନା କରି ଆଖି ବୁଜି ପଡ଼ିଥିଲି ମାତ୍ର । ହଠାତ୍ ଆଖି ମେଲା କରି ଦେଲି । ବଡ଼ ଅଦ୍ଭୁତ କଥା ମୁଁ ଆଖି ଖୋଲି ଦେବା ସଙ୍ଗେ ସଙ୍ଗେ ଲଣ୍ଠନଟା ଧପ୍ କରି ଲିଭିଗଲା ଏବଂ ସେଇ ମୂର୍ତ୍ତି ଦୃଢ଼ସ୍ୱରରେ ପରି ରୁକ୍ଷ ଭାବରେ "ଶୋଇଲୁ, ପୁଣି ଶୋଇଲୁ, ହଉ, ଶୁଅ", ବୋଲି କହି କହି ଘରର ଯେଉଁ କଣକୁ ଗତ ରାତିରେ ଯାଇଥିଲା ସେଇ କଣରେ ଲୀନ ହୋଇଗଲା । ମୁଁ ପୂର୍ଣ୍ଣ ସଚେତ । ପରିଷ୍କାର ଭାବରେ ସେଇ ସୂଚିଭେଦ୍ୟ ଅନ୍ଧକାର

---

ଉଠ ତେବେ ଜାଗ୍ରତ ହୁଅ ମଧୁର ସ୍ୱପ୍ନ ଖାଲି ନୁହେଁ
ସତ୍ୟାନ୍ବେଷୀ ପ୍ରେମାଲୋକ, ବିଦ୍ୟାଲୋକ, ଜ୍ଞାନାଲୋକ ସହ ।

ମଧ୍ୟରେ ମଧ୍ୟ ସେଇ ମୂର୍ତ୍ତି ଦେଖି ପାରୁଥିଲି । ତା'ପରେ ମୁଁ ଆଉ ସମ୍ଭାଳି ହୋଇ ନ ପାରି ଚପରାଶିଟିକୁ ଝିଙ୍କି ଉଠାଇ ଦେଲି ଅତି ଉଚ୍ଚରେ ଏଲେୟା, ଏଲେୟା ବୋଲି ଡାକିଲି । ତତ୍‌କ୍ଷଣାତ୍ ତାଙ୍କ ପରିବାରର ସମସ୍ତେ ଆସି ସେ ଘରେ ଜମା ହୋଇଗଲେ । ମୁଁ ସମସ୍ତ ଘଟଣା ସେମାନଙ୍କୁ ବିଶଦ ଭାବରେ କହିଲି । ସେମାନେ ଟିକିଏ ଅପ୍ରତିଭ ହେଲେ ଏବଂ" ନାହିଁ ବାବୁ କିଛି ଭୟ ନାହିଁ । ଚରମ ପିତ୍ତର ଅଧିକା ହେତୁ ସ୍ୱପ୍ନ ଦେଖୁଛନ୍ତି ଓ ଭୟ କରୁଛନ୍ତି ବୋଲି କହି ହଠାତ୍ ମୋ ନିକଟରୁ ବାହାରି ଗଲେ । ମୁଁ ତ ସେଦିନ ସମ୍ପୂର୍ଣ୍ଣ ସଚେତ ଥାଇ ସମସ୍ତ ଘଟଣା ସ୍ୱଚକ୍ଷୁରେ ଦେଖିଛି ଆଉ ଭାବିବାର କିଛି ନ ଥିଲା । ମୁଁ ବା ସେମାନଙ୍କ କଥାରେ କାହିଁକି ବିଶ୍ୱାସ କରିବି । ରାତି ସେତେବେଳକୁ ପ୍ରାୟ ୪ ୨ଟା, ଆଉ ମୋର କୌଣସି ଉପାୟ ନଥିଲା । ସେ ଘରେ ଶୋଇ-ବାକୁ ଆଉ ସାହସ ହେଲା ନାହିଁ । ସେଇଦିନ ରାତିରେ ଏଲେୟା-ଙ୍କର ପରିବାରର ଲୋକଙ୍କର ଭାବ ଗତି ଦେଖି ମୋ ମନରେ ଦୃଢ଼ ବିଶ୍ୱାସ ହେଲା ଯେ ସେମାନେ ପୂର୍ବରୁ ଏ ବିଷୟର ଭୟ ସମ୍ବନ୍ଧରେ ହୁଏତ ଆଭାସ ପାଇ ସେ ଘରଟି ଶୋଇବା ଘର ରୂପେ ବ୍ୟବହାର ନକରି ଭଣ୍ଡାର ଘର ଭାବରେ ବ୍ୟବହାର କରୁଥିଲେ । ମୁଁ ସେଇ ରାତିରେ ଦୁଆର ତାଲା ବନ୍ଦ କରି କୌଣସି ମତେ ଚପରାଶିଟିକୁ ଧରି ବାରଣ୍ଡାରେ ପଡ଼ି ରହିଲି ମାତ୍ର, ନିଦରେ ଶୋଇ ପାରିଲି ନାହିଁ ।

ରାତି ପାହିବାରୁ ବାର୍ଜୀ ଚିନେଟି ସୀମାଦ୍ରି ନାଇଡୁ, କାମି ନାଇଡୁ, ଗୋପୀ ନାଇଡୁ ପ୍ରଭୃତି ବଡ଼ ବଡ଼ ରୟତମାନଙ୍କୁ ଡାକି

---

ମହୀ ମହୀୟାନ୍, ତରୁ ଗରୀୟାନ୍, ଉଦାର ମହାନ୍
ଏହି ଜୀବନକୁ କ୍ଷୁଦ୍ର କରନା, ମିଛ ଭାବ ବହି, ଛି ଛି ମିଛ ଭାବ ବହି

ସମସ୍ତ ଘଟଣା ବର୍ଣ୍ଣନା କଲା । ଦେଖୁ ଦେଖୁ ଅଳ୍ପ ସମୟ ମଧ୍ୟରେ ଖବର ଗାଁ ସାରା ଖେଳଗଲା । ଗ୍ରାମବାସୀ ସ୍ତ୍ରୀ ଓ ପୁରୁଷ ଅନେକ ଆସି ଏଲେୟାଙ୍କ ଅଗଣାରେ ଜମା ହେଲେ । କଏ କମିଷ୍ଟ [illegible] ଏଲେମ୍ପା [illegible] ସେ ଘରେ ରହିବାକୁ ରାଜି ହୋଇ- [illegible] ମନା କଲେ । କାର୍ମୀ ସିମାଦ୍ରୀନାଇଡ଼ୁ ଓ ଅନ୍ୟାନ୍ୟ ମାନ୍ୟଗଣ୍ୟ ଗ୍ରାମବାସୀମାନେ ଘଟନା ସତ୍ୟ ହୋଇ ପାରେ ବୋଲି ମତ ପ୍ରକାଶ କରି କହିଲେ "ବାବୁ, ଏଲେୟାଙ୍କର ବାପା ବହୁଶ୍ରମ ସ୍ୱୀକାର କରି ମାଳିଅଞ୍ଚଳରେ ବ୍ୟବସାୟ କରି ଲାଭବାନ ହେଲା ଓ [illegible] । ବାଣ୍ଟି କଷ୍ଟରେ ନ ଖାଇ ନ [illegible] ଇ ନଷ୍ଟିବା ଧନ ବାକ୍ସରେ ଏ [illegible] ଓ ଆଠ କରିଥିଲା । ଘର ପର୍ଣ୍ଣ ହୋଇ ପ୍ରତିଷ୍ଠା ନ ହେଉଣୁ ସେ ଏଇ ଘରେ ମରଗଲା । ସେ ବଡ଼ ଲୋଭୀ । ଏ ଘରେ [illegible] ଆଶା କରିଥିଲା । ତା ହୋଇ ପାରିଲା ନାହିଁ । ତେଣୁ ତାର ପ୍ରେତାତ୍ମା ଏ ଘରେ ଭୂତ ପ୍ରେତ ଭାବରେ ରହିଥିବା ଅସମ୍ଭବ ନୁହେଁ" । ପରେ ଅନୁସନ୍ଧାନରେ ଜଣାଗଲା ଏଲେୟାଙ୍କର ପରିବାରର କେହି କେବେ ସେ ଘରେ ଶୋଇ ନାହାଁନ୍ତି । କାରଣ ପୂର୍ବରୁ ଲାଗିଥିବାରୁ ସେମାନେ ସେ ଘରେ ତାଲା ପକାଇ ବନ୍ଦ କରି ରଖିଥିଲେ ପ୍ରାୟ ବର୍ଷେ ପର୍ଯ୍ୟନ୍ତ । ତା ପରେ ସେମାନେ ଏ ଘର ଭଣ୍ଡାର ଘରରୂପେ ବ୍ୟବହାର କରୁଥିଲେ ।

ମୁଁ ଆଉ ସେ ଘରେ ନ ରହି ଗାଁର ଅନ୍ୟ ଗୋଟିଏ ଘରେ ପ୍ରାୟ ୮ ଦିନ ରହି ବାହାରି ଆସିଲି ।



(୨୫)

## ଶ୍ରୀ ଖଗେଶ୍ୱର ରାଉତରାୟ

ସନ୍ଧ୍ୟାବେଳେ ସାହି ଭିତରୁ ବୋହୂ ଝିଆଣୁଣୀ ହୋଇ ପାଞ୍ଚ-ଜଣ ଗାଁ ବାହାରକୁ ଝାଡ଼ା ଫେରିବାକୁ ଗଲେ । ତେଣୁ ଆସି ଯେ ଯାହାର କାମରେ ଲାଗିଗଲେ । କିନ୍ତୁ ଜଣେ ଘର କଣରେ ଓଢ଼ଣା ପକେଇ ବସି ରହିଲା । ରାତି ୯ଟା ହେବ । ଦାଣ୍ଡରୁ ତାଙ୍କ ସ୍ୱାମୀ ଆସି ପହଞ୍ଚିଲେ । ସ୍ୱାମୀଙ୍କୁ ଦେଖି ସେ ସବୁଦିନ ଭଳି ଆଜି ହସିଲେ ନାହିଁ କିମ୍ବା ପଦେ କଥା ବି କହିଲେ ନାହିଁ । ତାପରେ ସେ ଖାଇବାପାଇଁ ଭାତ ମାଗିଲେ । କିନ୍ତୁ ତଥାପି ତାଙ୍କର ସ୍ତ୍ରୀ ସେଠାରୁ ପାଦେ ହେଲେ ଘୁଞ୍ଚୁ ନାହାନ୍ତି । ସେ ସ୍ତ୍ରୀଙ୍କ ପାଖରେ ବସିପଡ଼ି ତାଙ୍କୁ କୋଳକୁ ଆଉଜାଇ ନେଲେ । କିନ୍ତୁ ବଡ଼ ଆଶ୍ଚର୍ଯ୍ୟ ସେ ଚଡ଼ଚଡ଼ ହୋଇ ଏତେ ବଡ଼ ପାଟି କରି କହି ଉଠିଲେ ଦେଖ ଦେଖ ରାଣ୍ଡିଟାରେ ଏତେବଡ଼ ଦଅରଟା ମୋ ସାଙ୍ଗରେ ଲାଗୁଛି । ଦାନ୍ତ କଡ଼ମଡ଼ କରି, ଓଢ଼ଣା ଛାଡ଼ି ସେ ଆସି ଦୁଆରେ ହାଜର । ମୁଣ୍ଡ ମୁକୁଳା, ଆଖି ଲାଲ ଲାଲ ଡ଼ମା ଡ଼ମା, ଦେହରେ ମୁଣ୍ଡରେ ଲୁଗା ନାହିଁ । ଭାରି ଭୟଙ୍କର ରୂପ । ତାକୁ ଦେଖି ଗୋଟିଏ ବାର ତେର ବର୍ଷର ଝିଅ ସେଇଠି ବେହୋସ ହୋଇ ପଡ଼ିଗଲା । ଏ କଥା ସବୁ ଦେଖି ସାହିଟା ଯାକର ମାଇପେ ମରଦ ସେଠାରେ ଆସି ରୁଣ୍ଡ ହୋଇଗଲେ । କୁହାଁ କୁହିଁ ବାର୍ତ୍ତାଟା ଗାଁଟାଯାକ ଖେଳିଗଲା ।

---

ପରାଣଟା ମୋର ତାଙ୍କର ପାଦରେ ଅଜାଡ଼ି ଦେଲି ଜାଣ
ସେ କରିବେ ଉଦ୍ଧାର, ପ୍ରଭୁ ଭଗବାନ ସେହି ହେବେ ମୋର ମହାଦାନ

ଦୁଆରଯାକ ମଣିଷ । ସୋରଷ ପକେଇବାକୁ ଗଡ଼ା ନାହିଁ । ସମସ୍ତେ ଯେ ଯାହାର ମନ୍ତବ୍ୟ ଦେଲେ । ଭୂତ ଲଗିଛି, ପିଶାଚୁଣୀ ଲଗିଛି, ଠାକୁରାଣୀ ପ୍ରକାଶ ହୋଇଛି, ଙ୍ଗ ଫେଟିଛି ଇତ୍ୟାଦି :—

ଏହି ସମୟରେ ସ୍ତ୍ରୀ ଲୋକଟି ବଲବଲକେଇଲା ପରି କହି ଉଠିଲେ ଆରେ ଦେଖମ ମୋ ଘରେ ଆଜ ଏତେ ଲୋକ କାହିଁକି । କାହାର କଣ ହୋଇଛି କି ? ମୋରତ କିଛି ହୋଇନି । କେତେ-ବେଳେ ସିନା ମୁଁ ଦୁଃଖ ପାଉଥିଲି । କିନ୍ତୁ ଏଇନେତ ମୁଁ ଭଲ ଅଛି । ମୋର ଘର ମୋର ଦ୍ୱାର, ମୋର ପୁଅ ଝିଅ ଅଛନ୍ତି । କଥାଟା କେହି ଠଉରାନ୍ତି ନ ଠଉରାନ୍ତି ଜଣେ ବୁଢ଼ୀ ବେଶ ଠଉରାଇ ପାରିଲେ । ସେ କହିଲେ ଆରେ ପିଲାଏ କଣ ଦେଖୁଛ ତାଠାରେ କିଏସେ ଗୋଟାଏ ଲଗିଛି ପରା । ତାକୁ ଆଗ ପଚାରି ସବୁ ବୁଝ ।

ତାକୁ ପଚରା ଗଲା ସେ କିଏସେ ? ସେ ଟିକିଏ ଶଂକି ଯାଇ କହିଲା ମୁଁ ପରା କ୍ଷୀର । ଯାହାର ବଡ଼ ଯା ଥିଲି ଏଇଠି । ମୋତେ କଣ କେହି ଚିହ୍ନି ପାରୁନ । ଆଉ ଜଣେ ପ୍ରଶ୍ନ କଲେ ତେବେ ତୁ କାହିଁକି ଏଠାକୁ ଆସିଲୁ । ସେ କହିଲା ମୁଁ ଆଜକୁ ଦୁଇ ବର୍ଷ ହେଲା ବାରଦ୍ୱାର ଶୁଣି ପିଣ୍ଡା ହୋଉଥିଲି । ମଞ୍ଜିକା ପଡ଼ିବାରୁ ସାନ ଯା ସାଥିରେ ଝାଡ଼ା ବସିଲାଠୁ ପକେଇ ଆସିଲି । ଏ କଥା ଶୁଣି ଦୁଇଜଣ ଏକାବେଳକେ କହି ଉଠିଲେ ତୁ ପରା ମଲା ପରେ ପୋଡ଼ା ହୋଇଥିଲୁ ? ପୁଣି ଜିଇଗଲୁ କେମିତି ! ସେ କହିଲା ମୁଁ ମରିଥିଲି ବୋଲି କିଏ କହୁଛି ? ହଁ ହଁ ମରିଥିଲି ବୋଲି ମୋର ମନେ ନାହିଁ । ସତେ ମୁଁ ମରି ଯାଇଥିଲି । ମଲାପରେ ମୋତେ

---

ବନ୍ଧୁ ମୋର ସେ, ସଖା ମୋର ସେ, ସାଥୀ ସେହି,
ଜନ ଧନ କର ଯାହାକୁ ପାଇବ ହୃଦୟ କଡ଼, ତାହାକୁ ଲହିତ ଭାବ

ଆଉ କେହି ପଚାରିଲେନି । ତମ ଭଗବାନ (ସ୍ତ୍ରୀର ସ୍ୱାମୀ) ବି ଆଉ ପାଖକୁ ଆସିଲେନି । ମୋ ବୁଢ଼ା ବାପାବି ମଲାବେଳେ ମୋତେ ଖଣ୍ଡେ ଭଲ ଲୁଗା ପିନ୍ଧେଇ ଗୁଡ଼ାଇଲେନି । ମୁଁ ଅନ୍ଧାରରେ ମରିଥିଲି କେତେ ସଜ ହୋଇଥାନ୍ତି । କିଛି କଲେନି । ପୁଣି ଗୋଟାଏ ଅସଲ କଥା ମୋ ପିନ୍ଧା ଲୁଗାଟିକୁ ମଶାଣିରୁ ଧୋବା ନେଇଥାନ୍ତା । ସେ ଲୁଗାଟି ପାଇଲେ ଧୋବା ଖୁସୀ । କିନ୍ତୁ ସେ ଲୁଗାଖଣ୍ଡି ସବୁଠୁ ଖରାପ । ତା ମନ ଅଶାନ୍ତ ହେଲା । ସେ ମୋ ଅକସ ସାଧିବ ପାଇଁ ଲୁଗା ଖଣ୍ଡିକୁ ଚାରି ଗଣ୍ଡିରେ ମାଡ଼ି ରଖିଲା । ସେଦିନଠୁ ମୁଁ ଅଶାନ୍ତରେ ବୁଲୁଛି । ସବୁ ଦୁଃଖ ମୋର ସେଇଥିପାଇଁ ।

ତା ପରେ ସମସ୍ତେ ଭଲ ପଣା ପାଣିର ବ୍ୟବସ୍ଥା କଲେ । ଗୁଣିଆ ତାର ଗୁଣି ମନ୍ତ୍ରରେ କ୍ଷୀରକୁ ଛଡ଼େଇ ପରୁଆରେ ନେଇଗଲା । ତା ପରେ ସବୁ ଭଲ । ଆଉ ସେ ଦୁମ୍ ଦାମ୍ ନାହିଁ । ଘର ସାରା ମଣିଷ କଣ୍ଠ ପିଠା ହେଲା । ସେ ଘରେ ଦିନେ ହେଲେ କେହି କ୍ଷୀରକୁ ଦେଖିଲେନି ।

କିଛିଦିନ ପରେ ଧୋବାଠାରୁ ଘଟଣାଟି ବୁଝିବାରୁ ତାହା ସତକଥା ବୋଲି ଜଣାଗଲା । ଏହାହିଁ ଆଶ୍ଚର୍ଯ୍ୟ ଅତି ଗୁପ୍ତକଥା ଯାହାକୁ କେହି ଜାଣି ନାହାନ୍ତି ସେ ଜାଣିଲା କିପରି । ଏଥିରେ ନିଶ୍ଚୟ କେଉଁ ରହସ୍ୟ ରହିଛି ।



---

ରାଜାର ଭୁବନ ସତେ, ସୁନ୍ଦର ଭୁବନ, ହେଲେ ମଧ୍ୟ ବହୁସ୍ଥଳେ ଅସୁନ୍ଦର ସୁନ୍ଦର ହେବା ଚେଷ୍ଟା ଚାଲିଛି ଅନବରତ, ଏଯେ ସତେ ସୁନ୍ଦର ଭୁବନ

(୨୭)

**ଶ୍ରୀ ପ୍ରହ୍ଲାଦ ମାର୍ଥା**

ଚୈତ୍ର ମାସର ଝାଞ୍ଜି ପିଟୁଛି । ବାଟରେ କାଉଡ଼ି ପୋଇ କେହି ନାହିଁ । ଦିନ ପ୍ରାୟ ଗୋଟାଏ ହେବ । କାଳୁ (ଧ୍ରୁବଚରଣ ମହାନ୍ତି) ସକାଳୁଆ ସ୍କୁଲ କରି ଘରକୁ ଫେରୁଛି । ଅନ୍ୟ ସାଙ୍ଗ-ମାନେ ଆଗରୁ କେତେବେଳୁ ଚାଲି ଗଲେଣି । ସେ ଛତାଟିଏ ଟାଣି ଧୀରେ ଧୀରେ ଚାଲୁଛି । ପକେଟରେ ପକେଟେ ହେବ ବୁଟଭଜା ପୂରେଇ ଗୋଟିଏ୨ ପାଟିରେ ପକଉଛି । ଏହିପରି ସେ ଆସୁ ଆସୁ ଗାଁ ପାଖ ଆମ୍ବ ତୋଟାରେ ପହଞ୍ଚି ଗଲାଣି । ତାକୁ ଭାରି ହାଲିଆ ଲାଗିଲା । ସେ ଗୋଟିଏ ଚକା ଆମ୍ବଗଛ ଶିଅରେ ଟିକିଏ ବସି ପଡ଼ିଲା । ଭାରି ଭୋକ । ସେ ଗୋଟିଏ ଗୋଟିଏ ବୁଟ ଚୋବେଇଲା । ଏହି ସମୟରେ ପୋହଲା ଏଣ୍ଡୁଅଟାଏ ଶୁଖିଲା ପତ୍ର ଉପରେ ଖସ୍ କିନା ଖସି ପଡ଼ିଲା । ତାର ଛାତି ଦମ୍ କିନା ହୋଇଗଲା । ସହଜେ ତ ସେ ଭାରି ଡରୁଆ ପିଲା । ଆଉ ସେ ସେଠାରେ ନରହେ । ତର ତର ହୋଇ ଘରକୁ ଫେରିଲା । ସେତେବେଳେ ଘରେ ଚୂଡ଼ା ଦହିର ପଙ୍ଗତ ଚାଲିଛି । ସେ ସେଥିରୁ ଗ୍ରାସେ ଖାଇ ଦେଲା । ତା ପରେ ଗାଧୋଇ ଗଲା । ଗାଧୋଇ ଆସି ଘରେ ପହଞ୍ଚୁ ନ ପହଞ୍ଚୁ

---

ମୁଁ ଆଜ ହୋଇଛି କିସ ? ତାଙ୍କର ଚିନ୍ତାରେ ପୂରିଛି ମନ
ନାହିଁ ନିଦ ଜାଗ୍ରତ ଅହର୍ନିଶ,
ସେ ଯେ ଭୁବନ ବିଜୟୀ ରାଜା ମୋର, ତାଙ୍କର ସଙ୍ଗେ ପ୍ରୀତି ମୋର
ଚିର ସ୍ୱପ୍ନ ।

ସେ ମୁଣ୍ଡ ମୁଣ୍ଡ ହୋଇ ମଝି ଅଗଣାରେ ପଡ଼ିଗଲା । ସାଙ୍ଗେ ସାଙ୍ଗେ ତାର ଦାଦା, ଖୁଡ଼ୀ, ବୋଉ, ମା, ବଡ଼ବାପା ପ୍ରଭୃତି ପ୍ରାୟ ତିରିଶ ଜଣ ସରିକି ଛୁଆ ପିଲା ମାଇପେ ମରଦ ହୋଇ ଜମା ହେଲେ । କାଳୁ ଏତେ ଲୋକଙ୍କୁ ଦେଖି ସାଙ୍ଗେ ସାଙ୍ଗେ ଗାମୁଛାଟାକୁ ଓଢ଼ଣା ପରି ଭଲପରି ପକେଇ ଗୁଣୁ ଗୁଣୁ ହୋଇ କାନ୍ଦିବାକୁ ଲାଗିଲା । ସମସ୍ତେ ଏକଥା ଦେଖି ଅବାକ୍, ପୁଣି ସେ ସେହି ଓଢ଼ଣା ତଳେ କରି କରି ହୋଇ ଖୁବ୍ ଜୋରରେ ହସିବାକୁ ଲାଗିଲା । ଯାହା ମୁହଁରୁ ଶୁଣିବ ସେ କହୁଛି ଏ କଣ, ଏ କଣ ।

ତାଙ୍କର ଆଉ ଜଣେ ଧଡ଼ିଆ ଦାଦା ଗୁଣି ମନ୍ତ୍ର, ଝାଡ଼ୁ ମନ୍ତ୍ର କିଛି କିଛି ଜାଣନ୍ତି । ତାଙ୍କୁ ଡକରା ହେଲା । ସେ ଆସି ପହଞ୍ଚିଲେ । ତା ପରେ ଭାରି କଡ଼ା ସ୍ୱରରେ କାଳୁକୁ ପଚାରିଲେ କିରେ ତୁ କିଏସେ ? କାହିଁକି ଆସିଲୁ ! ଏହି ପ୍ରଶ୍ନମାନ ସେ ଯେ କୌଣସି ଲୋକଠାରୁ ଭୂତ ଛଡ଼େଇଲା ବେଳେ ପଚାରନ୍ତି ବୋଲି ସେଠାରେ ଉପସ୍ଥିତ ଥିବା ଲୋକମାନେ କହିଲେ । ତା ପରେ ପୁଣି ପଚାରିଲେ କିରେ ତୁ ଏଇନେ ଯିବୁ ନା ନାହିଁ ? କାଳୁ ଓଢ଼ଣା ଖୋଲି କହିଲା ମୋ ପୁଅ ପାଖକୁ ମୁଁ ଆସିଛି । ତୋର କଣ ଗଲା । ଧଡ଼ିଆ ଦାଦା ପୁଣି ପ୍ରଶ୍ନକଲେ ତୁ କେଉଁଠି ଥିଲୁ, କପରି ଆସିଲୁ ଶୀଘ୍ର କହ । ଏପରି କହୁ କହୁ ସେ ଷଢ଼େଇଏ ହେବ କୁକୁଡ଼ା ଜଣ୍ଡି ଆଣି ନିଆଁ ଲଗେଇ ତା ନାକ ପାଖରେ ମଡ଼ି ଧରିଲେ । ସେ ଉତ୍କଟ ଗନ୍ଧରେ ସେ ମାରେ ନମାରେ ହୋଇ ଉଠିଲା । ତାପରେ ସେ କହିଲା ମୁଁ ସେହି ଚକା ଆମ୍ବ ଗଛରେ ଥିଲି । ପୁଅ ଏକୁଟିଆ ବସି ବୁଝି

---

ହେଉ ଦସ୍ୟୁ, ତସ୍କର, ଭସ୍ମ କେତେ ନାସ୍ତି ଜନର
ପ୍ରିୟ ଥିଲେ ପାପ, ବିଶ୍ୱାସ ଯହିଁ ଆସେ, ତହିଁ ନାହିଁ ଡର ।

ଘେବାଜ ଥିଲା । ମୁଁ ବୁଟ ଖାଇବ ବୋଲି ଏବଂ ପୂଅ ପାଖରେ ଟିକିଏ ବସିବ ବୋଲି ସେଠାରେ ଅନେଇ ରହିଥାଏ । ମୋର ବହୁତ ଆଶା ବୁଟରେ । ସେ ବୁଟ ଦେଲିନ । ମୁଁ ଖାଲିରେ ଜଣ୍ଡି ଥାଏ ଏହି ସମୟରେ ସେ ଏଣ୍ଡ଼ିଅ ଶବ୍ଦରେ ଚମକି ପଡ଼ିଲା । ମୁଁ ତା ଦେହରେ ଚଟ୍ କିନ ପଶିଗଲି । ସେଇଠୁ ଆସିଲି । ମୋର ପୁଅ ମରି ଯାଇଛି । ମୁଁ ସବୁ ପୁଅଙ୍କୁ ଭରି ଭଲ ପାଏ । ପୁଅମାନଙ୍କ ସଙ୍ଗେ ଖାଇବାପାଇଁ ମତେ ଖୁବ ଭଲ ଲାଗେ । ସେହି ଦହି ଚୂଡ଼ା, ଗୁଡ ମୋର ଭାରି ପ୍ରିୟ । ସେତକ ହୋଇଥିଲେ ମୁଁ ଭୁଲି ଯାଇ ଥାନ୍ତି, ତେଣୁ ତା ଉପରେ ଟିକିଏ ରାଗିଲି । ଏହି ସମୟରେ ଜଣେ ବୟସ୍କ ବ୍ୟକ୍ତି ଆସି ପହଞ୍ଚିଲେ । ଏହାଙ୍କୁ ଦେଖିବା ମାତ୍ରେ କାଳୁ ଗୋଟାଏ ଲମ୍ବା ଓଢଣା ଟାଣି ଦେଲି ଏବଂ ଜଣେ ଲୋକକୁ ଧିରେ ଧିରେ କହିଲି ମୁଁ ପର ନୁହେଁ ସେ କାଳୁ ସାହୁର ସ୍ତ୍ରୀ । ଏ ପର ମୋର ଦେଢଶୁର ଲେଖା ହେବେ । ମୋ ପାଖକୁ ଲାଗି ଲାଗି କଣ ଆସୁଛନ୍ତି ମ । ଏ କେଉଁ ରାଇଜ କଥା, ଏ ବାଡପଡ଼ା ଯୁଗରେ ସବୁ ବାରଣ ପୋଡ଼ି ଖାଇ ଗଲାଣି, ସବୁ ମାଇପି କଥା, ମାଇପି ଢଙ୍ଗ ।

ସତକୁ ସତ ସେହି ଗାଁରେ କାଳୁ ସାହୁଙ୍କର ସ୍ତ୍ରୀ ଗୋଟିଏ ପୁଅ ପ୍ରସବ କରି ଇନ୍ଫ୍ଲୁଏଞ୍ଜା ଶାଳରେ ମରି ଯାଇଥିଲା । ସେହି ବୟସ୍କ ବ୍ୟକ୍ତି ଜଣକ ତାର ଭାଇ ବଂଶରେ ଦେଢଶୁର ହେବେ । ତାର ମଧ୍ୟ ଦହି,ଚୂଡ଼ା, ଗୁଡ ପ୍ରଧାନ ଖାଦ୍ୟ ଥିଲା । ବଡ଼ ଆଶ୍ଚର୍ଯ୍ୟର କଥା

---

ପ୍ରଭୁ ! ତବ ଜୀବନେ ମମ ଜୀବନ
ତୁମେତ ଆତ୍ମାବନ ଜୀବନ, କାହିଁ ତେବେ ମୋ ମରଣ ।

କାନ୍ତୁ ଏ ସ୍ତ୍ରୀ ବିଷୟରେ ଆଗରୁ କିଛି ଶୁଣି ନଥିଲା କି ଜାଣି ନଥିଲା । ଏହି ଅଜବ କଥା ଗୁଡ଼ିକୁ କପରି ଅଙ୍ଗେ ନଭାଇଲା ପରି କହିଗଲା ଏହାଙ୍କୁ ବୁଝିବା କଥା । ଏହାଙ୍କ ମନରେ ବେଶୀ ଆଶ୍ଚର୍ଯ୍ୟ ସୃଷ୍ଟି କଲା ।

ତା ପରେ ଧଡଆ ଦାଦା ଓ ଆଉଜଣେ ଗୁଣିଆ ଆସିଲେ । ତାକୁ ମନଇଚ୍ଛା ଗୁଡ ମୁଢ଼ି ବୁଟ ଖାଇବାକୁ ଦେଲେ । ସେ ବସା-ଦହି ଚୂଡ଼ା ଗୁଡ ଚକଟାରୁ ପେଟେ ଖାଇଲା । ସେ ଟିକିଏ ଶାନ୍ତ ହେଲାପରି ଜଣା ପଡ଼ିଲା ଏଥରକ ଗୁଣିଆ ତାକୁ କାନ୍ତୁ ଦେହରୁ ଛାଡ଼ି ଚାଲି ଯିବାପାଇଁ କହିଲେ । ସେ ହଠାତ୍ ରାଜି ହେଲାନି । ସେହି ପଣା ପିଇବାକୁ ମାଗିଲା । ସାଙ୍ଗେ ସାଙ୍ଗେ ନଡଆ, ଚିନି କଦଳୀ ପକାଇ ଭଲ ପଣା କରାଯାଇ ତାକୁ ଦିଆଗଲା । ଶେଷରେ କାନ୍ତୁ ଦେହରୁ ଚାଲି ଯିବାକୁ ରାଜି ହେଲା । ଗୁଣିଆ ତାକୁ ସଂଗରେ ଗୋଟାଏ ଜିନିଷ ନେଇ ଯିବାକୁ କହିଲା । ତାଙ୍କ ନିର୍ଦ୍ଦେଶରେ ଗୋଟିଏ ଚାଲୁଣୀ ଅଣାଗଲା । କାନ୍ତୁ ସେହି ଚାଲୁଣିର ପିଠିପଟକୁ ହାତ ନ ଲଗାଇ ଦାନ୍ତରେ କାମୁଡ଼ି ତାକୁ ଉଠାଇ ଦାଣ୍ଡଆଡେ ଚାଲିଲା । ତାପରେ କିଛି ବାଟ ଯାଇ ସେ ଗୋଟିଏ କୁଳିଆ ଗଛ ମୂଳରେ ଦୁମ୍ କିନା ଗଛ କାଟିଲାପରି ପଡିଗଲା । ତାର ଚେତା ବୁଡ଼ିଗଲା । ତା ପରେ ମୁହଁରେ ପାଣି ମାରିବାରୁ ତାର ଚେତା ଆସିଲା । ସେ ଘରକୁ ଫେରିଲା । ତାକୁ ପଚାରିବାରୁ କହିଲା ସେ କିଛି ଜାଣେ ନାହିଁ । ତାର ଖାଲି ମୁଣ୍ଡ ବିଣ ହେଉଥିଲା ସେ ଏତିକି ଜାଣେ ।

---

ଦେନଟା ପାପୀ ବଞ୍ଚିଥାଏଁ ମୁହିଁ ସପନ ଭିତର ଦେଇ
ଜ ଗତ ଯାହା ତାହା, ସତ୍ୟ ଯେବେ, ସପନବି ସତ୍ୟ ତେବେ ।

ସତକୁ ସତ ଚିର ଅଶାନ୍ତି ମୃତ ଆତ୍ମାର ଲାଲସା ପୂର୍ଣ୍ଣ ହେଲେ ସେ କୌଣସି ଦୌରାତ୍ମ୍ୟ କରେ ନାହିଁ । କାହା ପାଖକୁ ଯାଏ ନାହିଁ । ଶାନ୍ତରେ ରହେ । ଏହା ଏହି ଘଟଣାଟିରୁ ଜଣାଗଲା । କିନ୍ତୁ ଏହା ଅତି କୌତୁହଳ ଓ ଆଶ୍ଚର୍ଯ୍ୟ ପୂର୍ଣ୍ଣ କଥା ।



(୨୭)

## ଶ୍ରୀ ଶୈଳେନ୍ଦ୍ରନାଥ ଚଟ୍ଟୋପାଧ୍ୟାୟ

ଏଇଟା ଯେ କେବଳ ଗୋଟିଏ ଭୂତ ଗପ ତା ନୁହେଁ ବା କୌଣସି ଅଶରୀରୀ ପ୍ରେତାତ୍ମାର ଲୀଳା ଖେଳା ମଧ୍ୟ ନୁହେଁ । ସ୍ମୃତିକୁ କୁହାଯାଇପାରେ ନିଆଁ ନେଇ ଖେଳିବା- ଖେଳାଳୀ ଯିଏ ହେଉ ପଛେ ପ୍ରଥମେ କଥାଟା ଖୋଲିକରି କହି ନେଉଚି ।

ମନ୍ଦିରମୟ ନଗର ଭୁବନେଶ୍ୱର । ଦେବତାର ଲୀଳାଭୂମି । ତା ଛଡ଼ା ଏହାର ପ୍ରତି ପ୍ରାନ୍ତର ଅନେକ ରାଜା ମହାରାଜାଙ୍କର ଉତ୍ଥାନ ପତନର ସାକ୍ଷୀ । ଏହିପରି ଗୋଟିଏ ପ୍ରାନ୍ତରର ପ୍ରାନ୍ତରେ ବସା ବାନ୍ଧିଚି ମୁଁ କେତେଦିନ ହେଲା - ତା ପ୍ରାୟ ତିନିବର୍ଷ ଧରି । ଆମ ବସାଠାରୁ ପ୍ରାୟ ଦୁଇ ଫର୍ଲଙ୍ଗ ଦୂରରେ କଟକ ପୁରୀ ଏସ୍-ଫାଲ୍ଟର ରାସ୍ତା ଚାଲି ଯାଇଚି ପୁରୁଷୋତ୍ତମ କ୍ଷେତ୍ରକୁ ଗନ୍ଧବତୀ ନଦୀ ପାରିହୋଇ ଧଉଳୀ ପାହାଡ଼ ଦେହରେ ଦେହ ଘଷି । ଏଇ ପ୍ରାନ୍ତ-

---

ଜାଗ୍ରତ ସୁପ୍ତି ଏହାର ଭିତରେ ଜୀବନ ଫେରେ
କିଛି ମୁଁ ବୁଝି ପାରେ ନାହିଁ—ଜନ୍ମ ମୃତ୍ୟୁ କିସ ମାନ ?

ରର ଗୋଟିଏ ଦିଗରେ ଅର୍ଥାତ୍ ଦକ୍ଷିଣରେ ଶିଶୁପାଳ ରାଜାଙ୍କର ଗଡ ଓ ଅନ୍ୟ ଦିଗରେ ଅର୍ଥାତ୍ ଉତ୍ତରରେ ବ୍ରହ୍ମେଶ୍ୱରଙ୍କ ମନ୍ଦିର। ଏମାନଙ୍କ ମଧ୍ୟରେ ଦୂରତ୍ୱ ହେବ ପ୍ରାୟ ଦୁଇ ମାଇଲ। ପୂର୍ବଦିଗରେ ହୀରପୁର ଗ୍ରାମ। ଏହି ଗ୍ରାମର ଦୂରତ୍ୱ କଟକ ପୁରୀ ରାସ୍ତାଠାରୁ ପ୍ରାୟ ଚାରିମାଇଲ ହେବ। ମୋ ବସାଠାରୁ ଚାହିଁଲେ ହୀରପୁର ଗ୍ରାମର ସୀମାରେଖା ଦେଖାଯାଏ ସତ କିନ୍ତୁ ଅସ୍ପଷ୍ଟ।

ଯେଉଁ ଘଟଣାଟି ଏଠାରେ ବର୍ଣ୍ଣନା କରୁଛି ତାହା ଆମ ନଜରକୁ ଆସେ ଭୁବନେଶ୍ୱର ଆସିବାର ପ୍ରଥମ ମାସରେ (ସେଇଟା ଥିଲା ବୈଶାଖ ମାସ, ପ୍ରଚଣ୍ଡ ଗରମ। ରାତିରେ ଅସହ୍ୟ ଗରମ ହେତୁ ଘର ଭିତରେ ସୁନିଦ୍ରା ଆସିବାର ଉପାୟ ନଥିବାରୁ ବାହାରେ ଉନ୍ମୁକ୍ତ ପ୍ରାନ୍ତରରେ ଘରସାରା ସମସ୍ତଙ୍କୁ ରାତି କଟାଇବାକୁ ହେଉଥାଏ। ଏହିପରି ଗୋଟିଏ ରାତିରେ ନିଦ ଭାଙ୍ଗି ଯିବାରୁ ମଶାରି ଭିତରୁ ବାହାରି ଆସି ବାହାରେ ଠିଆହେଲି। ରାତି ସେତେବେଳେ କେତେ ଜାଣେନା। ସେଇଟା ଜାଣିବାପାଇଁ, ପୂର୍ବାକାଶ ସଫା ହେଲାଣି କି ନାହିଁ ଜାଣିବାକୁ ଆକାଶକୁ ଚାହିଁଲି। ଦେଖିଲି ଗାଢ଼ କଳା ଅନ୍ଧକାର ଜମାଟ ବାନ୍ଧିଛି। କିନ୍ତୁ ତାରି ମଧ୍ୟ ଦେଇ ବହୁ ଦୂରରେ ଅଥଚ ସ୍ପଷ୍ଟ ଭାବରେ ଗୋଟିଏ ବେଶ ଉଜ୍ଜ୍ୱଳ ଆଲୋକ ଶିଖା ଆଗେଇ ଚାଲିଛି ଖୁବ୍ ବେଗରେ ଦକ୍ଷିଣ ଦିଗରୁ ଉତ୍ତର ଦିଗକୁ ଅର୍ଥାତ ଶିଶୁପାଳ ଗଡଠାରୁ ବ୍ରହ୍ମେଶ୍ୱର ମନ୍ଦିର ନିକଟକୁ। ବିସ୍ମିତ ହେଲି—କି ବ୍ୟାପାର ? ଏଇ ଗଭୀର ରାତିଥିରେ କିଏ ଏହି ପଥିକ

---

କଲ୍ୟାଣର ଦିବସ ଦିନ ଦିନ ଆସୁଅଛି, ଯାଉଅଛି
କିଛି ବୁଝି ହୁଏ ନାହିଁ—କିହ କିହ, ମୋତେ କିଏ ଜାଣିଛ
କିସ ଏହା ହେଉଛି।

ପ୍ରାନ୍ତରର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ଯାତ୍ରା ଆରମ୍ଭ କରିଚି । ସେଇ ରାତିରେ କେବଳ ଏତିକ କାରଣ ଏଇ ବ୍ୟାପାର ନେଇ ଖୁବ୍ ଔତ୍ସୁକ୍ୟ ନଥିଲା । ସେଥିପାଇଁ କାହାକୁ କହିବାର ପ୍ରୟୋଜନ ମଧ୍ୟ ଅନୁଭବ କରି ନଥିଲି ।

ତା ପରେ ପ୍ରାୟ ଏକ ସପ୍ତାହ କଟି ଯାଇଚି । ଦିନେ ସକାଳେ ମୋର ସ୍ତ୍ରୀ କହିଲେ ଯେ ସେ ରାତିରେ ଗୋଟାଏ ମଜା କାଣ୍ଡ ଦେଖିଚନ୍ତି । ରାତି ସେତେବେଳେ ତିନିଟା । ନିଦ ଭାଙ୍ଗି ଯିବାରୁ ସେ ବାହାରକୁ ଆସିଥିଲେ (ଲେଖିବାକୁ ଭୁଲି ଯାଇଚି ସେଇ ଏକ-ମାତ୍ର ପ୍ରଚଣ୍ଡ ଗ୍ରୀଷ୍ମକୁ ଉପେକ୍ଷା କରି ଘର ଭିତରେ ଶୋଉଥିଲେ) ସେ ଘରୁ ବାହାରି ପଡ଼ିଆକୁ ଚାହିଁ ଦେଖିଲେ ଯେ ଗୋଟାଏ ଆଲୋକ ଶିଖା ଉତ୍ତର ଦିଗରୁ ଦକ୍ଷିଣକୁ ଯାଉଚି । ଅର୍ଥାତ୍ ବ୍ରହ୍ମେଶ୍ୱର ମନ୍ଦିର-ଠାରୁ ଶିଶୁପାଳ ଗଡ଼ ପର୍ଯ୍ୟନ୍ତ ଶିଖାଟା ପ୍ରଚଣ୍ଡ ବେଗରେ ଆଗେଇ ଯାଉଚି । ମଝି ବାଟରେ ଦେଖାଗଲା ଯେ ଏଇ ଶିଖାଟା ତିନି ଭାଗରେ ବିଭକ୍ତ ହୋଇ ଆଗେଇ ଯିବାକୁ ଲାଗିଲା ପୁଣି କିଛିଦୂର ଯାଇ ଗୋଟିଏ ଶିଖା ହୋଇଗଲା । ମୋର ସ୍ତ୍ରୀ ଏପରି ନିର୍ଜନ ରାତିରେ ପଡ଼ିଆ ମଝିରେ ଆଲୋକ ଶିଖା ଦେଖି ଭୟରେ ଘର ଭିତରକୁ ପଶିଯାଇ କବାଟ ଲଗାଇ ଦେଲେ ।

ତାଙ୍କ ନିକଟରୁ ସବୁ ଶୁଣି ମୋର ଘଟଣାଟା ମଧ୍ୟ ତାଙ୍କୁ କହିଲି । ସେଇ ଦିନଠାରୁ ଆମର କାମ ହେଲା ସନ୍ଧ୍ୟା ହେଲେ ପଡ଼ିଆ ଆଡ଼କୁ ନଜର ଦେବା । ସେହି ଦିନଠାରୁ ଆମେ ସେଇ ଅଗ୍ନି ଶିଖାକୁ ପ୍ରାୟ ଦେଖି ଆସିଚୁ ଓ ଅନ୍ୟମାନଙ୍କୁ ମଧ୍ୟ ଦେଖାଇଚୁ ।

---

କିନ ସରେ ନାହିଁ ! ଘଣ୍ଟା ଘଣ୍ଟା ଗୁରି ଗୁରି ଘଣ୍ଟା ଜଣାଯାଏ
କିଛି ଭଲ ଲାଗେ ନାହିଁ—ତୃପ୍ତି, ଆନନ୍ଦ, ବନ୍ଧୁ ବାନ୍ଧବ
ସବୁ ଯେପରି ଚୂପ୍ ।

ଗତ ଆଠଶାଠାରୁ ଏହି ଅଗ୍ନିଶିଖା କେତେବେଳେ ଗୋଟିଏ ଏବଂ କେତେବେଳେ ବହୁ ଭାଗରେ ବିଭକ୍ତ ହୋଇ ଅବିରାମ ଗତିରେ ଯାତାୟତ କରେ । ପ୍ରାୟ ସାରା ବର୍ଷ ଧରି ପ୍ରତି ରାତ୍ରିରେ ଏହି ଆଲୋକ ଶିଖା ଦେଖାଯାଏ ତେବେ କୃଷ୍ଣ ପକ୍ଷରେ ଯେପରି ସ୍ପଷ୍ଟ ଦିଶେ ଶୁକ୍ଳ ପକ୍ଷରେ ସେପରି ସ୍ପଷ୍ଟ ଦେଖାଯାଏ ନାହିଁ । ଏଇ ଅଗ୍ନି ଶିଖାର ବ୍ୟାଖ୍ୟା ଅନେକ ନାନାଭାବରେ ଦେଇଛନ୍ତି । କିଏ କହୁଛନ୍ତି 'ଡ଼ାହାଣୀ ଆଲୁଅ କିନ୍ତୁ ଡାହାଣୀ ଆଲୁଅର ପ୍ରତି ରାତିରେ ଦେଖାଯିବା ସମ୍ଭବ ନୁହେଁ । ତା ଛଡ଼ା ପବନର ଅନୁକୂଳ ନ ହୋଇ ଗତି କରିବା ତା ପକ୍ଷରେ ଅସମ୍ଭବ, କିଏ କହେ ଯକ୍ଷ କାହାର ଗୁପ୍ତ ଧନକୁ ପହରା ଦେଉଛନ୍ତି 'ରାତି ପରେ ରାତି ଯୁଗ ଯୁଗ ଧରି । କିନ୍ତୁ ମୁଁ ଆଜିଯାଏ ବୁଝି ପାରିନାହିଁ ଏଇ ଆଲୋକ ଶିଖାଟି କଅଣ ?



(୨୮)

## ଶ୍ରୀ ଦୟାନିଧି ପଟ୍ଟନାୟକ

ପିଲାଦିନର କଥା । ସେତେବେଳେ ମୁଁ ପିଆରି ମୋହନ ଏକାଡେମୀର ଛାତ୍ର । ବୋଧହୁଏ ତୃତୀୟ କି ଦ୍ୱିତୀୟ ଶ୍ରେଣୀର । ସେତେବେଳକୁ ମୋର ପୂଜ୍ୟପିତା ପରଲୋକ ଗମନ କରି ସାରି-ଲେଣି । ଛାତ୍ରାବସ୍ଥାରେ ମଧ୍ୟ ସଂସାର ଉପର ବୋଝ ଧୀରେ ଧୀରେ

---

ସରଳରେଖାର ଜୀବନ ଯାର, ସେ କାହିଁକି କରିବ
ଛୋପାଇଁ ତାପାଇଁ ଅପେକ୍ଷା
ସେତ ତାର ଆପଣା କର୍ମ ପଥେ ଚାଲିଛି ଅବିରାମ ଶାନ୍ତ ନ
ନାହିଁ ଅଭିମାନ ।

ଗୃପି ଆସୁଥାଏ । ତଥାପି ଯୁବକ ସୁଲଭ ଚପଳତାର ନିଶାରେ ବାହାରେ ବୁଲିବା, ଫୁର୍ତ୍ତି କରିବା ପ୍ରଭୃତି କେତେଗୁଡ଼ିଏ ଆବଶ୍ୟକୀୟ ଓ ଅନାବଶ୍ୟକୀୟ କାର୍ଯ୍ୟକୁ ପ୍ରେରଣା ଯୋଗାଉଥାଏ । ମୋର ସ୍ୱର୍ଗୀୟା ମାତା ମୋର ଏଇ ଅବସ୍ଥାକୁ ବେଶ୍ ସତର୍କତାର ସହ ଲକ୍ଷ କରୁଥାନ୍ତି । ମୁଁ ବୁଲିବାକୁ ଭଲପାଏଁ ବୋଲି ସେ ମୋତେ ଗୋଟାଏ ବୁଲିବା କାମ ଯୋଗାଇବାକୁ ସ୍ଥିର କଲେ । ଆମର ମହାନଦୀ ଆରପାରି ଖଇରା ଗ୍ରାମରେ ଖଣ୍ଡେ ଜମିଥିଲା । ସେ ଜମି ଗଙ୍ଗାଧର ଚାଷ କରେ । ଆମକୁ ଭାଗଧାନ ଦିଏ । ଦିନେ ବୋଉ ତାଙ୍କର ସ୍ୱଭାବସୁଲଭ ସ୍ନେହ କୋମଳ ସ୍ୱରରେ କହିଲେ— "ପୁଅ, ତୋରତ କାଲି ରବିବାର, ସ୍କୁଲ ବନ୍ଦ । ଗଙ୍ଗାଧରତ ଆଜି ପର୍ଯ୍ୟନ୍ତ ଧାନ ଆଣିଲା ନାହିଁ । ତୁ ଖଇରା ଯା, ତାଙ୍କୁ ଧାନ ନେଇ ଆସିବାକୁ କହି ଦେଇ କାଲି ଫେରି ଆସିବୁ । ଦେଖ୍, ଯେପରି କ୍ଲାସ ଅନୁପସ୍ଥିତି ପାଇଁ ସୁଯୋଗ ନନେଉ" । ସେ ଦିନର ଅନୁଭୂତି ଆଜି ବି ମନେ ପଡ଼ିଲେ ପ୍ରାଣରେ ଗୋଟାଏ ଆତଙ୍କିତ ସିହରଣ ଆସେ । ବିଷୟଟି ଏହିପରି:—

ମୁଁ ସେଦିନ କଟକ ଷ୍ଟେସନରେ ପହଞ୍ଚିଲାବେଳକୁ ଗାଡ଼ି ଛାଡ଼ି ଦେଲାଣି । ଷ୍ଟେସନରେ କିଛି ସମୟ ବସିବା ପରେ ଦେଖାଗଲା ମୋପରି ଆଉ କେତେଜଣ ହତଭାଗ୍ୟ ମୋର ସମଦଶା ପ୍ରାପ୍ତ ହୋଇଛନ୍ତି । ସେମାନେ କିଏ ଫକୀରପୁର, କିଏ ବା ନିମପୁରର ଲୋକେ । ସଙ୍ଗରେ ଗୋଟିଏ ଗୋଟିଏ ବଡ଼ ବଡ଼ ଟଙ୍କିରା । ବିଶୃଙ୍ଖଳିତ-

---

ବୃତ୍ତ ଭୂମି ପରେ, ସରଳରେଖାର ଜୀବନ କାହିଁକି ରେ ?
ଏଯେ କୁକୁର ଲାଙ୍ଗୁଡ଼, ଯେତେ ସଳଖେଇଲେ ପୁଣି ହୁଏ ବଙ୍କା
ଏ କ ସର୍ବନାମ ।

ଚାଲ ଗାଲା ଉପରେ ଯିବା । ମୁଁ ସ୍ଥିର କଲି ଏମାନଙ୍କ ସଙ୍ଗେ ଗାଲା ଉପରେ ଚାଲିଯିବି । ଆଉ ସେଠୁଁ-ଖଇରାଢ଼ ସିଧା ସଡ଼କ ପଡ଼ିଛି । ଅସୁବିଧା କଣ ? ସେମାନେ ଠିକ୍ ଉତ୍ତର କଲେ । ଦିନ ଅଳ୍ପ ଥାଏ । ସେମାନେ କହିଲେ- ବାବୁ ଚାଲ ଯିବା । ଚାଲିଲୁଁ । ଠିକ୍ ଗାଲା ଅଧରେ ହୋଇଛୁ କୁଆଡ଼ୁ ଗୋଟାଏ ଖବଦନିଆ କଳା ବଉଦ ଘୋଟି ଆସିଲା । ଟପ୍ ଟପ୍ ବର୍ଷା ଆଉ ତା ସଙ୍ଗେ ପବନ । କଷ୍ଟେ ମଷ୍ଟେ ଗାଲା ପାରହେଲା ବେଳକୁ ପ୍ରାୟ ସନ୍ଧ୍ୟା-ଆଉ ସଙ୍ଗେ ସଙ୍ଗେ ଘନ-କୃଷ୍ଣାନ୍ଧକାରରେ ଆକାଶ ଭରି ଉଠିଲା ଏବଂ କଡ଼କଡ଼ା ପାତ ସହ ପ୍ରବଳ ବୃଷ୍ଟି ଓ ଝଡ଼ । ସେତେବେଳେ ଷ୍ଟେସନ ଚଲ ରାସ୍ତା କଡ଼ରେ ଦୁଇ ତିନୋଟି ଦୋକାନ ଥାଏ । ଦୁଇ ଦୋକାନରେ ଗୋଟିଏ ଗୋଟିଏ ମିଞ୍ଜି ମିଞ୍ଜିଆ ଡିବିରି ଆଲୁଅ ଜଳୁଥାଏ ।

ବର୍ଷା ଟିକିଏ ଛାଡ଼ିଥାଏ । ହଠାତ୍ ମନରେ ଅପୂର୍ବ ସାହସ ଖେଳିଗଲା । ଖଇରାଢ଼-ସିଧା ସଡ଼କ ପଡ଼ିଛି । ଚାଲିଗଲେ ଘଣ୍ଟାକରେ କାମ ଫତେ ! ଭୟ କଣ ? ଭଗବାନ ଅଛନ୍ତି । ଆଗେଇଲି-ସେଇ ସୂଚ୍ୟଭେଦ୍ୟ ଅନ୍ଧକାର ମଧ୍ୟରେ । ପ୍ରାୟ ଏକ କ୍ରୋଶରେ ଗଲେ ଗୋଟାଏ ଝଙ୍କାଳିଆ ବଡ଼ ବରଗଛ ଠିଆ ହୋଇଛି-ଠିକ୍ ରାସ୍ତା କଡ଼ରେ ।

ଗଛଟା ପାଖରେ ପହଞ୍ଚିବାକୁ ପ୍ରାୟ ୨୦୦ ଗଜ ବାକି ଥାଏ, ପୁଣି ହେଲା ପ୍ରବଳ ବର୍ଷା । ମୁଁ ଚାଲିଚି । ଗଛଟା ପାଖରେ ପହଞ୍ଚିଲା ବେଳକୁ ଇଚ୍ଛା ହେଲା, କେଉଁଠି ଟିକିଏ ଆଶ୍ରୟ ନେଲେ ହୁଅନ୍ତା ।

---

ଓମର ବଞ୍ଚି ରହିଛ ତୁମେ, ଶତ୍ରୁଙ୍କ ଅପାର, ପାଇଲ ନାହିଁ କୂଳାକୂଳ ।
ମାତ୍ର ତୁମେ ରହିଲ ବୁଡ଼ା ପାଣିରେ, ଯହିଁ ଅଗାଧ ନଦୀ ନାହିଁ
ପାରାପାର ।

ଠିକ ସେତିକିବେଳେ ଟିକିଏ ବର୍ଷାର ବେଗ କମିଲା ପରି ଜଣା-
ଗଲା । କିନ୍ତୁ ଅଦୂରେ ବର୍ଷାର ଝମ୍ ଝମ୍ ଧ୍ୱନି ଅବାରିତ ଗତିରେ
ଶୁଭୁଥାଏ । ସେଇଠି କେବଳ ଗୋଟାଏ ଗୋଟାଏ ବଡ଼ ବଡ଼ ପାଣି
ଟୋପା ପଡୁଥାଏ । ଅନୁମାନରେ ଜାଣିଲି ଏଠାରେ ଗୋଟାଏ
ବଡ଼ ଗଛ ଅଛି, ଏହାର ମୂଳରେ କିଛି ସମୟ ଆଶ୍ରୟ ନେଲେ
ହେବ । ଗୋଡରେ ଦରାଣ୍ଡି ଦରାଣ୍ଡି ଅନୁଭୂତ ହେଲା ଗୋଟାଏ
ବଡ଼ ଗଣ୍ଡିକାଠ ପଡ଼ିଲାପରି । ପରେ ବୁଝି ପାରିଲି ସେଟା ଚେରର
ଗୋଟାଏ ବଡ଼ ଚେର । ଆଉ ଟିକିଏ ଘୁଞ୍ଚିଗଲି । ଦେହରେ ଲାଗିଲା
ଗୋଟାଏ କଠିଣ ପଦାର୍ଥ । ଭାବିଲି ଏଇଟା ଗଛର ଗଣ୍ଡି । ଧୀରେ
ସେଇ ଗଛ ଗଣ୍ଡିକୁ ଆଉଜି ଗଲି ।

ଅନେକ ସମୟ କଟିଲା, ଅବିଶ୍ରାନ୍ତ ବୃଷ୍ଟିପାତ ଭିତର
ଦେଇ । ବର୍ଷା ଟିକିଏ ଛାଡ଼ିଲା । ଭାବିଲି-ରାତି ବେଶି ହେଉଛି,
ଏଥର ଧୀରେ ଧୀରେ ଗନ୍ତବ୍ୟ ସ୍ଥାନକୁ ଗଲେ ରକ୍ଷା । ମା ଦୁର୍ଗା
ସ୍ମରଣ କରି ସେହି ବିଶାଳ ବଟପୀରର କଠିନ କୋଡ଼ରୁ ନିଜକୁ ମୁକ୍ତ
କରିବାକୁ ଚେଷ୍ଟା କରି ଆଗକୁ ପଦକ୍ଷେପ କରିବାକୁ ପ୍ରୟାସ କଲି
ବେଳେ ଦେଖିଲି ଆଉ ଗୋଡଟା ଚଳୁନାହିଁ । ଆଶ୍ଚର୍ଯ୍ୟ ହେଲି ।
କଣ ଗୋଡ଼ଟା ଏଇ ବର୍ଷା ପାଣିରେ ଓଦାହୋଇ ଏପରି ରକ୍ତ
ଜମାଟ୍ ହୋଇଗଲା । ପୁଣି ଥରେ ଚେଷ୍ଟା କଲି ଗୋଡ଼ ଆଗକୁ ବଢାଇ-
ବାକୁ । ଏଥର ଗୋଡ଼ଟା ଆଗକୁ ଗଲା, ସତ; କିନ୍ତୁ ତାର ବୋଧହୁଏ
ମୋର ଶରୀରଟାକୁ ଟାଣିବାର ଶକ୍ତି ନଥିଲା । କି ଆଶ୍ଚର୍ଯ୍ୟ ! ମୋର

---

ଓମର ବୁଢ଼ା, ଓମର ବୁଢ଼ା, ଯାହାର ସାଥୀ ସୁରା ଓ ସାକୀ
ତାହାର ସାଥେ, ମୋହର କି କାମ ? ମୁଁ ଏକାକୀ ଏକାକୀ

ଭୋଳାରାମ ।

ଅନ୍ଧାରେ କ'ଣ କିଏ ଇତ୍ୟବସରେ ଗୋଟାଏ ଦଉଡ଼ି ଗଛଟା ସାଙ୍ଗରେ ବାନ୍ଧି ଦେଇଛି ? ସେ କିଏ ? ମୋର ସର୍ବଶକ୍ତି ପ୍ରୟୋଗ କରି ବୃକ୍ଷ କୋଳରୁ ମୁକ୍ତିଲାଭ କରିବାକୁ ଚେଷ୍ଟାକଲି । ସବୁ ବିଫଳ । ଅନ୍ଧାରେ ହାତବୁଲାଇ ଦେଖିଲି ଦଉଡ଼ି ଫଉଡ଼ି ବନ୍ଧାହୋଇ ନାହିଁ ତ ? କାହିଁ ? କିଛି ନାହିଁ ସବୁଠିକ ଅଛି । ଖାଲି ବର୍ଷା ପାଣିରେ ଲୁଗା-ଜାମା ଓଦା ହୋଇ ଯାଇଛି । ତେବେ ଇଏ କଣ ? ମୁଁ ଆଗକୁ ଯାଇ ପାରୁ-ନାହିଁ କାହିଁକି ? ଭାରି ଭୟ ହେଲା । କିଛି ବୁଦ୍ଧି ପାଇଲି ନାହିଁ । କିଛିକ୍ଷଣ ପରେ—

ସେଇ କୃଷ୍ଣପକ୍ଷ ରାତିର ଘନକୃଷ୍ଣମେଘାଚ୍ଛାଦିତ, ବୃଷ୍ଟି ବାହୁଳିତ ଦୁର୍ଭେଦ୍ୟ ଅନ୍ଧକାରର ତମିସ୍ରା ମଧ୍ୟରେ ଭୟରେ ମୋର ଆଖି ଦୁଇଟା ମୂହୂର୍ତ୍ତକ ପାଇଁ ଜଳି ଉଠିଲା । ସେଇ ଆଖିର ଆଲୁ-ଅରେ ଯାହା ଦେଖିଲି ତାହା ଯେ କଣ ସେ କଥା ବର୍ଣ୍ଣନା କରିବାକୁ ମୋର ଭାଷା ନାହିଁ । ପୁଣି ଏଇ ଏତେଦିନ ପରେ ସେ କଥା ଲେଖିଲା ବେଳକୁ ଦେହ ଶିହରି ଉଠୁଛି, ରୋମ ଟାଙ୍କୁରି ଉଠୁଛି । ଏଟା କ'ଣ ? ଗୋଟାଏ ପ୍ରକାଣ୍ଡ କୃଷ୍ଣ ବର୍ଣ୍ଣ ପଦାର୍ଥ—ଠିକ ହାତୀ ଶୁଣ୍ଢ ପରି- ଧୀରେ ଧୀରେ ଗଛ ଡାଳରୁ ମୋ ଆଖି ଆଗରେ ଓହ୍ଲାଇ ପଡ଼ୁଛି । ମୋତେ ଏ ଶୁଣ୍ଢଟା ଧରିବ ନା କଣ ? ଆଉ ଭାବି ପାରିଲି ନାହିଁ । ମୁଣ୍ଡ ବୁଲେଇ ଦେଲା— ତା ପରେ ? ତା ପରେ ଅନେକ ସମୟ ପର୍ଯ୍ୟନ୍ତ-କେତେ ସମୟ ଜାଣେନା-ଧୀରେ ଧୀରେ ଯେତେବେଳେ ଆଖି ଫିଟାଇଲି, ଦେଖିଲି-ଜଣେ ଅପରିଚିତ ଲୋକ ଗୋଟିଏ ଚାରିକୋଣିଆ କାଚବନ୍ଧା ଲଣ୍ଠନରେ ଗୋଟିଏ ଡିବିରି ଜଳାଇ ପାଖରେ ଶୋଇ ମୋ ଦେହରୁ ଓଦା

---

ବର୍ଣ୍ଣିବ ପା ଭାଟ ଅଇଲେ ଦେଖ. ଦୂର କର ତ କୁ
ସେପେ ମନୁଷ୍ୟ ସମାଜେ ତସ୍କର, ମହା ନୀଚ ମନ ।

ଜାମାଟା ଓହ୍ଲାଇବାକୁ ଚେଷ୍ଟା କରୁଛି । ଏଁ-ଏକଣ ? ଲୋକଟା ମୋର ଏଇ ବିପଦରେ ବି ଜାମାଟାକୁ ଦେହରୁ ଗ୍ରହଣ କରିବାକୁ ଚେଷ୍ଟା କରୁଛି ? ପୁଣି ମୁଣ୍ଡ ଘୂରିଗଲା- ଅଳ୍ପକ୍ଷଣ ପାଇଁ ଚୈତନ୍ୟ ଶୂନ୍ୟ । ପୁଣି ସେହି ଲୋକଟିର ଦୁଶ୍ଚେଷ୍ଟା ଦ୍ୱାରା ଯେତେବେଳେ ପୂର୍ଣ୍ଣ ଚେତନା ଫେରି ଆସିଲା- ଦେଖିଲି ଧୀରେ ଧୀରେ ନେତ୍ର ଉନ୍ମିଳିତ କରି- ସେ ଲୋକଟି ବଡ଼ ବ୍ୟସ୍ତରେ ମୋର ସେବା କରୁଚି ଆଉ ତାର ସଙ୍ଗୀକୁ କହୁଛି- "ଆହା ! ବଡ଼ଘରର ପିଲାପରି ଦେଖା ଯାଉଚି, ମୁଁ ଯଦି ଟିକିଏ ଅସାବଧାନ ହୋଇଥାନ୍ତି ଲୋକଟା ଉପରେ ଆମର ଦୁଇଟାଯାକ ଶଗଡ଼ ମାଡ଼ି ଯାଇଥିଲେ ସେ କଣ ଆଉ ବଞ୍ଚି ଥାଆନ୍ତା ?

ହଠାତ୍ ଚମକି ପଡ଼ିଲି । ଧୀରେ ପଚାରିଲି- ଭାଇ ତମେମାନେ କିଏ ? ସେମାନଙ୍କର ଉତ୍ତର ଦେବା ଆଗରୁ ସେଇ କ୍ଷୀଣ ଆଲୋକରେ ଦେଖିଲି- ରାସ୍ତା ଉପରେ ଦୁଇଟା ଶଗଡ଼ ଠିଆ ହୋଇଛି, ଆଉ ବଳଦ ଗୁଡ଼ାକ ଯୁଆଳୀରେ ବନ୍ଧା ହୋଇ ଫୁଁ, ଫୁଁ ହେଉଚନ୍ତି । ବୁଝିବାକୁ ବାକି ରହିଲା ନାହିଁ ଯେ—ଏମାନେ ଶଗଡ଼ିଆ, ମୋର ଅଜ୍ଞାତ ବିପଦରେ ମୋତେ ସାହାଯ୍ୟ କରିବାକୁ ବ୍ୟସ୍ତ । କୃତଜ୍ଞତାରେ ଅନ୍ତଃକରଣ ଭରି ଉଠିଲା । ଭାବିଲି- ଏମାନେ ନିଶ୍ଚୟ ଦେବତା । ମୋର ଜୀବନ ରକ୍ଷାକରି ମୋତେ ପୁନର୍ଜନ୍ମ ଦେଲେ ।

ପରେ ମୋର ଜୀବନ ରକ୍ଷକ ଶଗଡ଼ିଆ ଭାଇମାନଙ୍କଠାରୁ ଯାହା ଶୁଣିଲି- ମୋତେ ବିଶ୍ୱାସ କରି ପାରିଲି ନାହିଁ, ଯେ ପର୍ଯ୍ୟନ୍ତ ମୋର ଧଳା ଲୁଗା ଓ ଜାମା ନାଲି ସଡ଼କ କାଦୁଅରେ ରଞ୍ଜିତ ହେବା

---

ଛୁଇଁ ଗଲା ମେଘ, ଦୂରେ ରୁହ ଆସୁଛି ଭାଟ ମିଥ୍ୟାବାଦୀ
କହିବ ଗୋଟିଏ କଥା, କଥା ନାହିଁ ତାର ଠିକ୍- ବାପ ନାହିଁ ଯାର ଠିକ୍ ।

ଲକ୍ଷ କରି ନ ଥିଲି । ସେମାନେ କହିଲେ-ମୁଁ କୁଆଡେ ଲମ୍ବ ଖମ୍ବ ହୋଇ ରାସ୍ତା ମଝିରେ ଜ୍ଞାନଶୂନ୍ୟାବସ୍ଥାରେ ପଡି ରହିଥିଲି । ସେମାନେ ମୋତେ ଦେଖି ଗାଡ଼ି ନ ଫେରାଇ ଥିଲେ ବହୁ ଆଗରୁ ମୁଁ ପଞ୍ଚତ୍ୱ ପ୍ରାପ୍ତ ହୋଇ ଥାଆନ୍ତି" ଧନ୍ୟ ଭଗବାନ୍! ଏ ପୁଣି କଣ ? ଯାହାହେଉ ମୁଁ ଆଉ ମୋ ଜୀବନରେ ସେ ଶଗଡ଼ିଆ ଭାଇମାନଙ୍କୁ ଦେଖିନାହିଁ । ସେମାନଙ୍କ ନାମ ଗ୍ରାମ ପଚାରି ବୁଝିଥିଲି; ଆଉ ଏତେଦିନ ପରେ ତାହା ବି ମୋର ମନେ ନାହିଁ ସେଦିନ ରାତିରେ ସେହି ଶଗଡ଼ିଆ ଭାଇମାନଙ୍କର ଗାମୁଛା ପିନ୍ଧି, ଯୋଡ଼ହୋଇ ସେଇ ଜଗତ୍‌ପୁର ଚଟି ଘରେ ରାତିଟା କଟାଇବାକୁ ପଡିଲା । ପରଦିନ ସକାଳେ ପୁଣି ଗନ୍ତବ୍ୟ ସ୍ଥାନାଭିମୁଖେ ଯାତ୍ରା କଲି । ସେଠାରେ କଥାଟାର ଆଲୋଚନା ହେଲା । ସେମାନଙ୍କ ମଧ୍ୟରୁ ଗ୍ରାମର ଜଣେ ବୃଦ୍ଧ ପତିତପାବନ ମହାନ୍ତି କହିଲେ- "ସେଠି ଗୋଟାଏ ବ୍ରହ୍ମରାକ୍ଷସ ଅଛି ।"

ସେ ବ୍ରହ୍ମରାକ୍ଷସ ହେଉ ବା ନ ହେଉ ମୋର କିନ୍ତୁ ସେଇ-ଦିନଠାରୁ ପୃଥିବୀରେ ଭୂତ ଥିବାର ବିଶ୍ୱାସ ହୋଇଛି ।

---

## (୨୯)

### ଶ୍ରୀ ବ୍ରଜକିଶୋର ତ୍ରିପାଠୀ

ଭୂତ, ପ୍ରେତ, ଡାହାଣୀ, ପିଶାଚ, ବ୍ରହ୍ମରାକ୍ଷସ ଏମାନଙ୍କ ଉପଦ୍ରବର କାହାଣୀ ଆମ ଦେଶରେ ବିରଳ ନୁହେଁ । ପ୍ରତ୍ୟକ୍ଷ-

---

ଏ ସଂସାର କି ହେଲା ଗୋ ଭୂକମ୍ପ ହେଉଛି ଆଉ ନାହିଁ
କହୁଛନ୍ତି ସକଳେ ଦୁନିଆ ରହିଛି ଉପରେ ମାତ୍ର ମୋ ମନେ ହୁଏ
ଚାଲେ ଧପାଇ ।

ଦର୍ଶିଙ୍କଠାରେ ମଧ୍ଯ ଜଡ଼ଦ୍ରବର ଦୃଷ୍ଟାନ୍ତ ଅଦ୍ୟାପି ଶୁଣାଯାଏ । ମନ୍ତ୍ର, ଯନ୍ତ୍ର, ଏବଂ ତନ୍ତ୍ର ସାଧନା ବଳରେ ଘାର ପେଶିବା ବେତାଳ ବିଦ୍ୟା ସାଧନ କରିବା ଏବଂ ଭୂତ ପ୍ରେତ ଆଦି ଉପଦ୍ରବ ବନ୍ଦ କରିବା ଏବେ ମଧ୍ଯ ଅନେକ ଯାଗାରେ ଶୁଣିବାକୁ ମିଳେ । ଏହି ବିଷୟରେ ଲେଖା ଥିବା ତାଳପତ୍ର ପୋଥି ମୁଁ ପଢ଼ିଛି ଏବଂ କେତେକ ବ୍ୟକ୍ତିଙ୍କ ପାଖରେ ସେହିପରି ପୋଥି ରହିଥିବା ମୁଁ ଜାଣେ । ସେହି ପୋଥିରେ ଲେଖାଥିବା ପ୍ରଣାଳୀ ଅନୁସାରେ ସାଧନା କଲେ, ଭୌତିକ ଉପଦ୍ରବ ସୃଷ୍ଟି କରିବା ଏବଂ ଉପଦ୍ରବ ହେଉଥିଲେ ବନ୍ଦ କରିବା ସମ୍ଭବ ବୋଲି ମନେ ହୁଏ । ଶନିବାର ଦିନ ଉଲ୍ଲିଖିତ ନକ୍ଷତ୍ର ବେଳରେ ଶ୍ମଶାନରୁ କଳା ତୁଳସୀ ଗଛକୁ ଦୁବ, ଚାଉଳ, ଧୂପ, ଦୀପ ଦେଇ ନୈବେଦ୍ୟ କରି ଗଛର ପୂର୍ବ ଦିଗସ୍ଥ ଚେର ବାମ ହସ୍ତରେ ଉପାଡ଼ି ଅଣ୍ଟାରେ ଫେରି ଆସି, ସେହି ଚେର ଯେଉଁ ଘର ଚୂଳରେ ଖୁଞ୍ଚିବ ସେହି ଘରେ ଢେଲା ପଥର ବୃଷ୍ଟି ହେବ ବୋଲି ପୋଥିରେ ଲେଖାଅଛି ।

ଯେଉଁମାନଙ୍କ ମତ ଜଗତ କେବଳ ପଦାର୍ଥମୟ, ସେମାନଙ୍କ ପକ୍ଷରେ ଭୂତ ପ୍ରେତାଦି ବିଷୟ ଅବିଶ୍ୱାସ ଯୋଗ୍ୟ । ପଶ୍ଚିମ ଦେଶର ଲୋକେ ଯଥା ଇଂଲଣ୍ଡ, ଆମେରିକା ଏବଂ ୟୁରୋପ ଦେଶର ଖ୍ରୀଷ୍ଟ ଧର୍ମାବଲମ୍ବୀ ଲୋକେ ଏଥିରେ ଅବିଶ୍ୱାସ କରନ୍ତି । କିନ୍ତୁ ଗତ ଶହେ ବର୍ଷ ହେଲା ବ୍ରହ୍ମବିଦ୍ୟା ସମାଜର ଆନୁକୂଲ୍ୟରେ ଆସ୍ତେ ଆସ୍ତେ ସେହି ଦେଶବାସୀଙ୍କ ଅବିଶ୍ୱାସ ଖଣ୍ଡନ ହେବାରୁ, ଏକ୍ଷଣି କେତେକ ବିଶ୍ୱାସ କଲେଣି । ଭୂତ ପ୍ରେତାଦି ବିଷୟରେ ବିଷାଦ୍ ସି ଡ଼ାବଲ୍ୟୁ

---

ଫଗିବାପଇଁ ଇଚ୍ଛା ହୁଏ ଯେବେ ପ୍ରବଳ, ମଣିଷ ହୁଅଇ ପାଗଳ,
ଏହି ଫଗିବା ଇଚ୍ଛା ଅନ୍ତରେ ଘାଇ ପ୍ରକାର ଗୁପ୍ତ ତାହା ଶୁପ୍ତ ତାହା
ଜାଗ୍ରତ ଯେବେ ମହା ଭୟଙ୍କର ।

ଲେଡ଼୍‌ବିଟର ବହୁତ ଗ୍ରନ୍ଥ ଲେଖି ଯାଇଛନ୍ତି । "ଅଦୃଶ୍ୟ ସାହାଯ୍ୟ-
କାରୀ" ନାମକ ସେଥିରୁ ଗୋଟିଏ ଗ୍ରନ୍ଥ । ସେଥିରେ ଲେଖାଥିବା
କେତୋଟି ଘଟଣା ଏଠାରେ ଦିଆଗଲା (୧) ଲଣ୍ଡନର ହାଲବାନ
ନାମକ ସାହିରେ ଦିନେ ନିଆଁ ଲାଗି ପ୍ରାୟ ଦୁଇଟି କୋଠା ଭସ୍ମ
ହୋଇଗଲା । ଗୋଟିଏ କୋଠାର ମାଲିକ ଜଣେ ବୟସ୍କ ସ୍ତ୍ରୀ,
ତାଙ୍କର ଜଣେ ସାଙ୍ଗ ସ୍ତ୍ରୀଙ୍କୁ ଲଣ୍ଡନ ଗ୍ଲଣ୍ଡ କାଲ୍‌ଚେଷ୍ଟର ଯିବାକୁ
ପଡ଼ିଲା । ତେଣୁ ତାଙ୍କର ଶିଶୁଟିକୁ (ଘର ମାଲିକ) ସାଙ୍ଗ ଜିମା ଦେଇ
ସେ ଯାଇଛନ୍ତି । ଆକସ୍ମିକ ଭାବରେ ନିଆଁ ଲାଗିବାରୁ ସେ ଯା ପ୍ରାଣ
ବ୍ୟାକୁଳରେ ଘରୁ ବାହାରକୁ ଚାଲି ଯାଇଛନ୍ତି । ଘର ତମାମ ନିଆଁ
ଲାଗି ସାରିଲାଣି ଏବଂ ବହୁତ ସମୟ ପରେ ଗୃହିଣୀଙ୍କୁ ଶିଶୁ କଥା
ମନେ ପଡ଼ିଲା । ସେତେବେଳକୁ ନିଆଁ ଲିଭାଳି ଦଳ ଘଟଣା ସ୍ଥଳରେ
ପହଞ୍ଚି ନିଆଁ ଲିଭାଇବା କାର୍ଯ୍ୟରେ ବ୍ୟସ୍ତ ରହିଛନ୍ତି । ମନେ ପଡିବା
ସଙ୍ଗେ ସଙ୍ଗେ ଗୃହିଣୀ ଆତୁର ହୋଇ ନିଆଁ ଲିଭାଳି ଦଳକୁ ଅନୁ-
ରୋଧ କଲେ ଏବଂ ଶିଶୁ ଶୋଇଥିବା ନିର୍ଦ୍ଦିଷ୍ଟ ସ୍ଥାନ ଦର୍ଶାଇ
ଦେଲେ । ନିଆଁ ଲିଭାଳି ଦଳରୁ ଜଣେ ସାହାସୀ ନିଆଁ ଭିତର ଦେଇ
ନିର୍ଦ୍ଦିଷ୍ଟ ସ୍ଥାନକୁ ଯାଇ ଦେଖେ ତ ସେହି ବଖରାର ଅଧା ଛାତ ପୋଡ଼ି
ତଳେ ପଡ଼ିଛି । ଶିଶୁ ଶୋଇଥିବା ସ୍ଥାନରୁ ପ୍ରାୟ ଦୁଇ ତିନି ହାତ
ଦୂରରେ ଚତୁର୍ଦ୍ଦିଗରେ ନିଆଁ ଜଳୁଛି ଏବଂ ଶିଶୁ ନିକଟରେ ଜଣେ
ତେଜୋମୟୀ ଅପ୍‌ସରା ବସି ଶିଶୁଟିକୁ ଆଶ୍ୱାସନା କରୁଛି । କିନ୍ତୁ
ସେତେବେଳେ ସେ ଶିଶୁ ନିକଟକୁ ଯାଇଛି । ଅପ୍‌ସରା ଅନ୍ତର୍ଧ୍ୟାନ
ହୋଇ ଯାଇଛି । ଶିଶୁଟିକୁ ହାତରେ ଧରି ସେ ବହୁ କଷ୍ଟରେ
ବାହାରକୁ ଆସି ଘଟଣା ବର୍ଣ୍ଣନା କଲା । ଶିଶୁର କୌଣସି ଆଘାତ
ହୋଇ ନ ଥିଲା ।

---

ସଞ୍ଚିତ ସ୍ତ୍ରୀ କେତେ ଅଛନ୍ତି, ଜୀବନକୁ କରନ୍ତି ବ୍ୟାକୁଳ
ବିଶ୍ୱାସ ନ ରଖ ତେସନ ସ୍ତ୍ରୀ ସ୍ଥଠାରେ ହେବ ସିନା ମହାହରବର ।

(୨) ଦିନେ ଜଣେ ବନ୍ଧୁଙ୍କ ସ୍ତ୍ରୀ ଓ ତାଙ୍କର ଝିଅ ଲଣ୍ଡନ ସହର ରାସ୍ତାରେ ଚାଲି ଚାଲି ଯାଉଥିଲେ । ସାମାନ୍ୟ ଅନ୍ୟ ମନସ୍କ ହେବାରୁ ଗୋଟିଏ ଘୋଡ଼ାଗାଡ଼ି ଆସି ଝିଅ ଦେହରେ ଧକ୍କା ଦେଇଛି ଏବଂ ବାଳିକାଟି ଗାଡ଼ି ତଳେ ପଡ଼ି ଯାଇଛି । ମୁହୂର୍ତ୍ତକ ଭିତରେ ଏ ସବୁ ଘଟି ଯାଇଛି । ମା ଅତି ବ୍ୟସ୍ତ ହୋଇ କେବଳ ଚିତ୍କାର କରୁଛନ୍ତି । ଗାଡ଼ି ଚାଲିଗଲା ପରେ, ବାଳିକାଟି ହସି ହସି ଦୌଡ଼ି ଆସିଛି । ତାହାର କୌଣସି ଆଘାତ ହୋଇନାହିଁ ।



(୩୦)

**ଶ୍ରୀ ବାରୁଣୀ କାନୁନଗୋ**

ପିଲାଦିନେ କେତେଥର ଅନେକଙ୍କଠାରୁ ଭୂତ କାହାଣୀ କଥାଗୁଡ଼ିକରେ ପାଣି ବନ୍ଦ ହେବା, ଧାନ କୁଟିବା କାହାଣୀ ଶୁଣି ଡର ଲାଗୁଥିଲା । କେତେଥର ମୋର ଗୁରୁଜନମାନଙ୍କୁ ପଚାରିଛି ଭୂତ କଣ ? ସେ କଣ ସତରେ କଥା କହେ, ମଣିଷକୁ ଡାକେ ଓ ଗୋରୁ ହାଉଡ଼ରେ ପିଟେ ? କିନ୍ତୁ ସେମାନେ ଭାବନ୍ତି ମୁଁ ବୋଧହୁଏ ଡରିଯିବି କି କଣ ? ତେଣୁ କୁହନ୍ତି ହେ—ସେଗୁଡ଼ାକ ବାଜେ କଥା । ଭୂତ ଗୋଟାଏ ଛାଇ ମାତ୍ର । ଗୋଟାଏ ଅଦୃଶ୍ୟ ଆତ୍ମା । ମୁଁ ଭାବେ ଆତ୍ମାଟା କଣ ? ଏମିତି ଚାଲି ବରମାସ୍ କାମ କରେ । ତେବେ

---

ସେତ ଝାଳ ନେବା ଦାସୀ ନୁହେ ମୋହନ ଅନ୍ତରର ଅନ୍ତରଙ୍ଗ
ପ୍ରିୟତର
ସେ ଯେ ଦେଇଛନ୍ତି ଆପଣାକୁ ବିକି ଚିର ଦିନ, ଅନ୍ତର ବାହାର
ଜନ୍ମ ଜନ୍ମାନ୍ତର ।

ଆତ୍ମାଟା କଣ ? ଏମିତି କେତେ କଣ ଭାବୁଛି, କିନ୍ତୁ ଠିକ୍ ଉତ୍ତର କେବେ ପାଇ ନାହିଁ । କେତେଥର ମନେ ମନେ ଭାବୁଛି ମୁଁ ଥରେ ଭୂତ ଦେଖନ୍ତି କି ! କିନ୍ତୁ କୌଣସି ଥର ଦେଖିବାର ସୁବିଧା ସୁଯୋଗ ପାଇ ନାହିଁ । ଥରେ ହଠାତ୍ ଶୁଣିବାକୁ ପାଇଲି ଯେ, ମୋର ଜଣେ ଆତ୍ମୀୟଙ୍କ ଘରେ କୁଆଡ଼େ ଭୂତ ଲାଗିଛି । ଭୂତ ମଣିଷଙ୍କୁ ଲାଗେ ବୋଲି ଜାଣିଥିଲି କିନ୍ତୁ ଏଠାରେ ଭୂତ ଲାଗିଛି ଗୋଟାଏ ଗୋଲାପ କୁଣ୍ଡକୁ । ସମସ୍ତେ ଦେଖିବାକୁ ଗଲୁ । ତାକୁ ପଚାରି ଶୁଣିଲି ଯେ ଦିନେ ସନ୍ଧ୍ୟାରେ ସେମାନେ ଦେଖିବାକୁ ପାଇଲେ ତାଙ୍କର ଅଗଣାରେ ଥିବା ଗୋଲାପ କୁଣ୍ଡଟି ଦୋମହଲାର ପାରାପେଟ୍ ରେ ବସିଲାଣି । ହଠାତ୍ ଗୁହୁଁ ଗୁହୁଁ ସେ କୁଣ୍ଡଟି ଆସି ତାଙ୍କର କାନ୍ଥ ଉପରେ ପହଞ୍ଚିଲା । ସେମାନେ ଭୟରେ ଥରି ଉଠିଲେ । କୁଣ୍ଡଟି ନେଇ ଠାକୁର ଘରେ ରଖିଲେ ଓ ପରେ ଦେଖିବାକୁ ପାଇଲେ ଯେ କୁଣ୍ଡଟି ଆଉ ଉଠୁ ନାହିଁ । ଦୁଇ ଚାରିଦିନ ପରେ ସେମାନେ ଦେଖିବାକୁ ପାଇଲେ ଯେ ବାଡ଼ିରେ ଥିବ ଗୋଟିଏ ବଡ଼ ପାଣିଡ୍ରମ ଆସି ଘେଷାଇ ଘରେ ରହୁଛି । ସେମାନେ ଭାବିଲେ ଯେ ବୋଧହୁଏ ପିଲାମାନେ ଏପରି କରୁଛନ୍ତି । ତେଣୁ ପିଲାମାନଙ୍କୁ ଗାଳିଦେଇ ଚୁପ୍ ରହିଲେ । କିନ୍ତୁ ତା ପରଦିନ ହଠାତ୍ ତାଙ୍କର ଘର ଯାକର ଲୁଗା ପଟା ଯାଇ କୁଅରେ ପଡୁଛି । ବଡ଼ ହଇରାଣରେ ତାକୁ କାଢିଲେ ଓ ଡରି ଯାଇ ଗୁଣିଆ ଡାକି ଘର କିଲାଇଲେ । କିନ୍ତୁ ଆଠ ଦଶ ଦିନ ପରେ ଯେଉଁ କଥାକୁ ସେହି କଥା । ତେଲ ଚଢ଼ିଲା । କାଚ ପଡ଼ିଲା, ସେମାନେ ଯାଇ ଜଣେ ଜ୍ୟୋତିଷଙ୍କୁ ପଚାରିଲେ ଏ ସବୁ କଣ ସେ ମଧ୍ୟ ତାହା ଠିକ୍ ଭାବରେ କହି ପାରିଲେ ନାହିଁ ।

---

ଐଶ୍ୱର୍ଯ୍ୟ ଜାଣ କି ତୁମେ ?
ଯଶଶ୍ରୀ ଜ୍ଞାନ ବୈରାଗ୍ୟ ଐଶ୍ୱର୍ଯ୍ୟ ବୀର୍ଯ୍ୟ

ହନେ ସେମାନେ ଦେଖିବାକୁ ପାଇଲେ ଯେ କୁଇଟି ଘୁଇ କୋଠା ପାହାଚ ଉଠି ଉଠି ଯାଉଛନ୍ତି । ସେମାନେ ଖୁବ୍ ଡ଼ର ପାଇ ପାଟି କଲେ, କଣ କରିବେ । ଜଣେ ମୁସଲମାନ୍ ଗୁଣିଆକୁ ଡକାଇ ଘର ଭିତରେ କଣ ସବୁ ପୂଜା କଲେ ଓ ଘରେ କୀର୍ତ୍ତନ ଚଳିତ କଲେ । ସେହିଦିନଠାରୁ କୁଣ୍ଡ ଉଠିବା ଇତ୍ୟାଦି ବନ୍ଦ ହୋଇଗଲା । ସ୍ୱା ମଧ୍ୟରେ ଦୁଇ ତିନି ବର୍ଷ ବିତି ଗଲାଣି ଆଉ ସେପରି ହେବାର ଦେଖା ଯାଇ ନାହିଁ ।

---

(୩୧)

## ମୈତ୍ରୀ ଶୁକ୍ଳ ବି. ଏ. ଙ୍କ ଅଭିଜ୍ଞତା :—

ପ୍ରାୟ ୨୦ ବର୍ଷ ଆଗର କଥା । ମୋର ଗିଉସୀ ପୁଅ ଭାଇ ସ୍ୱର୍ଗୀୟ ଲକ୍ଷ୍ମୀକାନ୍ତ ଚୌଧୁରୀ ରେଭେନ୍ସା କଲେଜର ଭୂତପୂର୍ବ ସଂସ୍କୃତ ଅଧ୍ୟାପକ । ସେ ହଠାତ୍ ମେନିନଜାଇଟିସରେ ମରିଗଲେ ।

ଆମେ ଦୁଇଟି ଭଉଣୀ, ଆମର ଭାଇ ନାହିଁ । ସେ ଆମର ଭାଇର ସ୍ଥାନ ଅଧିକାର କରିଥିଲେ । ଜୀବନରେ ସେହି ପ୍ରଥମ ମୋର ଦୁଃଖ- ତାଙ୍କୁ କାନ୍ଦି ଭାଇ ବୋଲି ଡାକୁଥିଲୁଁ ।

କାନ୍ତଭାଇ ହୋମିଓପ୍ୟାଥି ଛଡା ଆଉ କୌଣସି ଚିକିତ୍ସାରେ ବିଶ୍ୱାସ କରୁ ନ ଥିଲେ । କିନ୍ତୁ ହଠାତ୍ ସାଂଘାତିକ ରକମ ଅସୁସ୍ଥ ହୋଇ ପଡ଼ିବାରୁ ତାଙ୍କୁ ଏଲୋପାଥି ହସପିଟାଲ୍‌କୁ ପଠାଇ ଦିଆ- ଗଲା । ସେ ପ୍ରଥମେ ନିର୍ମଳ ଅବସ୍ଥାରେ ଥିଲେ ଏବଂ ଅବସ୍ଥା କ୍ରମଶଃ ଖରାପ ଆଡ଼କୁ ଯାଉଥିଲା । ମୁଁ କଲିକତାକୁ ଟ୍ରଙ୍କକଲ କରି ଜଣେ

---

ସଙ୍ଗୀତର ସୁର ଅନନ୍ତ ସୁର ପଶି ପଶି ଯାଏ
ମୁଁ ସେହିପରି ତୋହରି ଭିତରେ, ତୋହରି ଭିତରେ ପଶି ପଶି ଯାଏ ।

ହୋମିଓପ୍ୟାଥିଙ୍କୁ ଅଣାଗଲା । ସେ ମନେ ଔଷଧ ଦେବାପରେ କାନ୍ତ ଭାଇଙ୍କର ଜ୍ଞାନ ହେଲା । ଜ୍ଞାନ ହେଲାକ୍ଷଣି ସେ ପ୍ରଥମେ କଥା କହିଲେ ତାଙ୍କ ସ୍ତ୍ରୀଙ୍କୁ । ମନ ମତେ ବଞ୍ଚାଇ ଦେଲ, ସେହିଦିନ ରାତିରେ ଡାକ୍ତର ପୁଣି କଲିକତା ଚାଲିଗଲେ ତାଙ୍କୁ କୌଣସି ଉପାୟରେ ଆଉ ରଖି ହେଲାନାହିଁ ।

୨୪ ଘଣ୍ଟା ପରେ କାନ୍ତ ଭାଇଙ୍କ ଅବସ୍ଥା ପୁଣି ଖରାପ ଆଡକୁ ଗଲା ଏବଂ ତାଙ୍କର ଅନ୍ତ ହେଲା ।

ଏହା ପରେ ମୁଁ କଲିକତାକୁ ଗଲି ହୋମିଓପ୍ୟାଥି ପଢ଼ିବା-ପାଇଁ ଆଶୁତୋଷ କଲେଜକୁ । ସେହି ସମୟରେ ମୁକ୍ତାରାମ ବାବୁ ଷ୍ଟ୍ରିଟରେ ଗୋଟିଏ ବେସରକାରୀ ଛାତ୍ର ଆବାସରେ ମୁଁ ଥିଲି । ମୋର ଘର ଥିଲା ତିତାଲାର ଉପର କୋଠରୀରେ । ନିର୍ଜନରେ ପଢ଼ା ଭଲ ହେବ ବୋଲି ମୁଁ ସେହି ଘରଟି ବାଛି ନେଇଥିଲି । ମୁଁ ରାତିରେ ଶୋଇବା ଘରେ ଗୋଟିଏ ଲଣ୍ଠନ ରଖୁଥିଲି । ଆଲୁଅଟା ନେଇ କଲ ଘରକୁ ଯିବାର ସୁବିଧା ହେଉଥିଲା ।

ସେହିଦିନ ମୁଁ ରାତିରେ ପଢ଼ା ଶେଷକରି ଶୋଇବାକୁ ଗଲି । ଭଲକରି ସେତେବେଳେ ନିଦ ଆସିନାହିଁ ଆଖି ବୁଜି ଆସୁଛି । ଏହି ସମୟରେ ମନେ ହେଲା ମୋ ଦେହରେ ଗୋଟିଏ ସବୁଜ ଆଲୁଆନ ଢଙ୍କା ହୋଇଛି, ଆଉ ସେଇଟା କାନ୍ତ ଭାଇଙ୍କର । ମୁଁ ଅବାକ୍ ହେଲି । ମୋ ଦେହରେ ଏ ଆଲୁଆନ୍‌ଟା ଆସିଲା କିପରି ? ଏହି ଆଲୁଆନଟା କାନ୍ତ ଭାଇଙ୍କର ବିଶେଷ ପ୍ରିୟ ଥିଲା ।

ଲକ୍ଷ୍ମୀକାନ୍ତଙ୍କ ସ୍ତ୍ରୀ ତାଙ୍କ ଦେହ ଘୋଡ଼ାଇ ଦେବାପାଇଁ ଆଲୁଆନଟା ତାଙ୍କୁ ଦେବାକୁ କହିଲେ । ମୋର ଯେତେଦୂର

---

ଦାଗ କଣ୍ଠ, ଇଙ୍ଗିତ, ଚାହାଣୀ, ମନକୁ ନିଏ କିଣି,
ସେହିଠାରେ ରହିଯାଏ ଭାବନା—ସେ ପୁର ପାରି ହୋଇ ଯିବର ପୁଣି ।

ମନେଅଛି ଆଲୁଆନଟା ଦେହ ସଙ୍ଗରେ ଗୁଡ଼ା ଯାଇଥିଲା । ଭାବିଲି ବୋଧହୁଏ ସେହି ଆଲୁଆନଟା ଶେଷ ବେଳକୁ ଦିଆ ହୋଇନାହିଁ । ଭୁଲରେ ମୋ ଲୁଗାପଟା ସାଙ୍ଗରେ ଗୁଡ଼ା ଆସିଛି । ଆଖି ଖୋଲି ଦେଖିଲି, ଲଣ୍ଠନଟା ଜଳୁଛି, ପୁଣି ଆଖି ବୁଜିଲି । ଏଥର ଖଟ ହଲିଲା, ମନେହେଲା ଯେମିତିକି କେ ଗୋଟିଏ ଭାରି ଦେହ ମୋ ଖଟ ଉପରେ ବସିଲା । ଭାରି ଡର ମାଡ଼ିଲା । ଉପର ଘରେ ମୁଁ ତ ଏକା, ମୋ ଖଟରେ ଏଠି ବସିବ କିଏ ?

ଏହାଥରେ ଆଖି ବୋଧେ ଫିଟାଇଛି- ପଞ୍ଜାବୀର ଗୋଟିଏ ହାତ ମୋ ମୁହଁ ଉପରେ ଆସି ପଡ଼ିଲା- ମନେହେଲା ମୋ ପାଖରେ ମୋ ଆଡ଼କୁ ମୁହଁ କରି ଯେ ବସିଥିଲେ ସେ ହାତଟା ମୋ ମୁହଁ ଉପରୁ କାଢ଼ି ନେଇ ମୋ ଦେହର ଅନ୍ୟପଟେ ରଖିଲେ । ମୁଁ ଆତଙ୍କରେ ଉଠି ବସିଲି । ଲଣ୍ଠନଟା ସେହିପରି ଜଳୁଥିଲା ଦେଖିଲି ମୋ ଘରେ କେହି ନାହିଁ ଏବଂ ଆଲୁଆନଟା ମଧ୍ୟ ନାହିଁ ।

---

(୩୬)

**ଶ୍ରୀ ହୀରାଲାଲ ସେନ୍‌ଗୁପ୍ତ**

ଯୁବା ବୟସରେ ମନ ପାଣି କାଦୁଅ ମାନେ ନାହିଁ— ଆଲୁଅ ଅନ୍ଧାର ଦିନ ରାତି ତା ପକ୍ଷରେ ସବୁ ସମାନ—ଆଜକୁ ୨୦, ୨୫ ବର୍ଷ ତଳ କଥା—ଜଟଣୀରୁ ଖୋର୍ଦ୍ଧା ଟାଉନ ପର୍ଯ୍ୟନ୍ତ ବାଟରେ ବସ ଚଳାଚଳର ବ୍ୟବସ୍ଥା ବିଶେଷ ନ ଥିଲା—ମୁଁ

---

ତୁ କିଏ ? ମୁଁ କିଏ ଚେତନା ସତ୍ତାଏ
ସେହି ଚେତନା ଘନ ଶରୀରେ ଦେଖା ଦିଏ ।

ସେତେବେଳେ I Sc ପଢୁଥାଏ କଟକରେ—ଶୀତ ବଡଦିନ ଛୁଟୀରେ ଯାଇଥାଏ । ମୋର ଜଣେ ସାଙ୍ଗ ମ୍ୟାଡ୍ରାସ ମେଲରେ ଆସିବାର କଥା ଥିଲା । ତାଙ୍କୁ ଆଣିବାପାଇଁ ଏକୁଟିଆ ସାଇକେଲ ଖଣ୍ଡି ଧରି ବାହାରି ପଡ଼ିଲି କାଂଶୀ ଷ୍ଟେସନ ଅଭିମୁଖରେ, ବନ୍ଧୁଙ୍କୁ ସଙ୍ଗରେ ଆଣିବା ଆନନ୍ଦରେ ମନଟି ଉଚ୍ଛଳି ଉଠୁଥାଏ । ଯାଇ ଷ୍ଟେସନରେ ପହଞ୍ଚିଲି । ରାତି ୧୧ଟା ବେଳେ ମେଲ ଟାଇମ୍- ବଡ ଦୁଃଖର ଖବର ସେ ବନ୍ଧୁଟି ମୋର ଆସି ନ ଥାନ୍ତି, ମନର ଆଶା ମଉଳି ଗଲା ।

ଫେରି ପଡିବି ବୋଲି ବାହାରିଲି, ଆଶା ଭଙ୍ଗର ବ୍ୟଥାରେ ଆହତ ମନଟିକୁ କିଏ ଜାଣିଛି- ସିଧା ସଳଖ ରାସ୍ତା ହୁଏତ ସାଙ୍ଗ ସାଥି କେହି ଯୁଟି ପାରନ୍ତି । ସାଇକେଲଟି ଛୁଟି ଚାଲିଛି କୃଷ୍ଣପକ୍ଷ ଅନ୍ଧକାରର ବୁକୁ ଚିରି- କଟକଣା ଥିଲା ପର୍ଯ୍ୟନ୍ତ ଜଣେ ଅଧେ ସାଥି ଯୁଟି ଗଲେ । ତା ପରେ ଜନହୀନ ପଥର ପଥିକ ମୁଁ ଆଗେଇ ଚାଲିଲି- ୧ ମାଇଲ ହେବ ବାଟ ଗଲା ପରେ ମୋଠାରୁ କିଛି ଦୂରରେ ଗୋଟିଏ ପେଟ୍ରୋମାକ୍ସ ଆଲୁଅ ପରି ଆଲୁଅଟିଏ ଦେଖିଲି- ଭାବିଲି କୌଣସି ବରଯାତ୍ରୀ ଦଳ ହୁଏତ ଆଲୁଅ ଧରି ଯାଉଅଛନ୍ତି- ସେମାନଙ୍କ ସାଥି ହେବାପାଇଁ ଝଡବେଗରେ ସାଇକେଲ ଛୁଟାଇ ଦେଲି କିନ୍ତୁ ସେତେ ଯୋରରେ ସାଇକେଲ ଚଳାଇ ମଧ୍ୟ ଦେଖିଲି ଉକ୍ତ ଆଲୁଅଟି ମୋ ଠାରୁ ଠିକ ପୂର୍ବ ଦୂରତା ରଖି ଯାଉ ଅଛି- କଲେଜ ପଢୁଆ ମନ ମୋର ଅର୍ଥ ଖୋଜି ବସିଲା । ଭାବିଲି ମଟରର ପଛ ଆଲୁଅ ହୋଇ ପାରେନା- ମଟର ମୋ

---

ବୃନ୍ଦ ଅଛି, ବୃନ୍ଦ ଭିତରେ ମୁଁ ଅଛି ହ୍ଲାଦ,
ମହାଂରେ ମହାଂରେ ବୁଲିବି ମୁହିଁ, ସକଳ ମଧୁ କରିବି ସ୍ଵାଦ ।

ଆଡ଼କୁ ଆସୁଥିଲେ ମୋତେ ଝଟି ପାଆନ୍ତାଣି- ମନିଷ ଚଲ୍ଲ ଆଲୁଅ ହୋଇଥିଲେ ମୁଁ ତାଙ୍କ ସାଙ୍ଗ ହୋଇ ପାରନ୍ତାଣି । ତେବେ ଇଏ କଣ ? ଗୁପ୍ତ ଚରେ ଟିକେ ଡର ଡଙ୍କ ମାରିଲା ତଥାପି ଝାଲ ନାଳ ହୋଇ ସାଇକେଲ ଚଳାଇ ଗଲି ଜିନଷ କଣ ଦେଖିବାପାଇଁ—କିନ୍ତୁ ମୋର ଶତ ଚେଷ୍ଟାରେ ସୁଦ୍ଧା ତାର ଏବଂ ମୋର ମଧ୍ୟର ଦୂରତ୍ୱ କମାଇ ପାରିଲି ନାହିଁ ।

ଧୀରେ ଧୀରେ ଆଲୋକଟି ବାଟ ଛାଡ଼ି ଅବାଟକୁ ଗଲା- ମୁଁ ମଧ୍ୟ ଅଜଣା କୌତୁହଳରେ ମନରେ ସାହସ ବାନ୍ଧି ତା ପଛେ ପଛେ ଚଲି ଧାନ ବିଲ ମଝି ଦେଇ ସାଇକେଲଟିକୁ ଗୋଟିଏ ତେନ୍ତୁଳି ଗଛ ପାଖରେ ରଖି ଦେଇ । ଆଲୁଅଟି ଧିରେ ଧିରେ ଗୋଟିଏ ପୋଖରୀ ହୁଡ଼ାରେ ଉଠିଲା । ମୁଁ ମଧ୍ୟ ତା ପଛ ଦେଇ ଗଲି- ସେତେବେଳେ ଡରରେ ମୋର ହାତ ଗୋଡ଼ ଅବଶ ହେଲାପରି ଲାଗୁଥାଏ- ନିର୍ଜ୍ଜନ ଅନ୍ଧକାର ବିଲ ମଝିରେ ଗୋଟିଏ ଅଜଣା ଆଲୁଅ ପଛରେ ମୁଁ । ଆଉ ସାହସ ଅଣ୍ଟିଲା ନାହିଁ । ଆଲୁଅଟି ପୋଖରୀର ପାଣି କୂଳକୁ ଓହ୍ଲାଇ ଗଲା- ମୁଁ ମଧ୍ୟ ଆସ୍ତେ ଆସ୍ତେ ଫେରି ଆସିଲି । ସାଇକେଲ ଧରି ଘରମୁହାଁ । ହୋଇ ଫେରିଲି ଘରକୁ କପରି ଆସିଲି ତାର ଖବର କହି ପାରିଲି ନାହିଁ । ରାତି ଦୁଇଟା— ଘରେ ପହଞ୍ଚି ଗୋଡ଼ ହାତ ଅବଶ ହୋଇଗଲା । ଆଜି ପର୍ଯ୍ୟନ୍ତ ବୁଝି ପାରେନାହିଁ କାହା ପଛରେ ମୁଁ ଧାଇଁଥିଲି—



---

ନନ୍ଦନମ ପଦ୍ମ କୋଷ ଦେଖାଇ କେତେ କରୁଛୁ ନାଟ
ତୁ ପରା ସାହିତ୍ୟ ସମ୍ରାଟ—ବିବୁଧେନ୍ଦ୍ର ମଣି
ତୋତେ କହିବ କିଏ —ଅଙ୍ଗଜୂକକୁ ଲାଜ ନାହିଁ ତେଣୁ ତୁ ଧନ୍ୟସାଥି

(୬୩)

### ଶ୍ରୀ ସୁଧାକର ପଟ୍ଟନାୟକ

୧୯୭୮ ମାଲର କଥା, ମୁଁ ଥାଏ ସେଟଲମେଣ୍ଟରେ ଜଣେ A.S.O କେନ୍ଦ୍ରାପଡ଼ା ର ମହାକାଳପଡ଼ା ଖୋଇଆ ଅଞ୍ଚଳରେ ଓଂଷ-ଛଡା କ୍ୟାମ୍ପରେ ଗୋଟାଏ ଆମ୍ବତୋଟାରେ ଥାଏ ମୋର ଇଜଲସ । କ୍ୟାମ୍ପରେ ପ୍ରତିଦିନ ଶହେଶ ପାଞ୍ଚଶ କରି ଲୋକ ଜମା ହେଉଥାନ୍ତି ସେମାନଙ୍କର ଜମିବାଡ଼ି ଖବର ବୁଝିବାକୁ । ବଡ଼-ଭୋରରୁ ମୋର ଗାଧୋଇବା ଅଭ୍ୟାସ । ଦିନେ ଭୋରରେ ଚିତ୍ରୋତ୍ପଳା ନଈକୁ ଗାଧୋଇବାକୁ ଗଲାବେଳେ ଅକସ୍ମାତ୍ ମୋ ଆଗରେ ଗୋଟାଏ ଅଶ୍ବତ୍ଥ ଗଛର ଗୋଟାଏ ଡାଳ ମଡ଼ ମଡ଼ ହୋଇ ଭାଙ୍ଗି ପଡ଼ିଲା । ଆମ୍ଭେମାନେ ଅନେକଙ୍କୁ ପୁଛିଲୁ ଡାଳଟା କେମିତି ଭାଙ୍ଗି ପଡ଼ିଲା ? ମୁଁ ଆଉ ସେଆଡ଼କୁ କିଛି ଭାବନା କରି-ନାହିଁ । ପୁଣି ତହିଁ ପରଦିନର ଘଟଣା । ଏହା ହେଉଛି ଫେବ୍ରୁୟାରି ମାର୍ଚ୍ଚ ମାସର କଥା । ଆମ୍ବ ତୋଟାରେ ବେଶ ବଉଳ ହୋଇଛି । ସକାଳବେଳା ଦଶଟା ଏଗାରଟା ବେଳ । ମୋର ଭରି ଇଜଲସ ଲାଗିଛି । କୌଣସି ଆଡ଼େ ଗଛପତ୍ର ଦୋହଲୁ ନାହିଁ । ଅଥଚ ହଠାତ୍ ମୋର ସାମନା ଆମ୍ବ ଗଛରୁ ଗୋଟାଏ ପ୍ରକାଣ୍ଡ କଣ୍ଟାଡ଼ାଳ ମଡ଼ ମଡ଼ ହୋଇ ଭାଙ୍ଗି ପଡ଼ିଲା । ଏ ଅଦ୍ଭୁତ କଥା ଦେଖି ଲୋକ-ମାନଙ୍କ ମୁହଁରୁ ସଙ୍ଗେ ସଙ୍ଗେ ବାହାରି ପଡ଼ିଲା— ଆଜ୍ଞା ଏ ଗଛ ଡାଳରେ କିଏ ବିଶ୍ରାମ ନେଲା । ମୋ ମନରେ କେଜାଣି କାହିଁକି ଗୋଟାଏ କିପରି ଦକ୍କା ପଶିଲାଭଳି ଲାଗିଲା । ଅବଶ୍ୟ

---

ବଚନ୍ତୁ, ବଚନ୍ତୁ, ତୁ ବହୁ ଭାଷୀ ବଚନ୍ତୁ

ଆଉ କହିବ କିସ ? ତୋଠାରୁ ଦୂରରେ ରହିଲେ , ମଣିଷ ବଞ୍ଚିବ
ଜାଣ ।

ମୁଁ ପିଆଜଙ୍କୁ ଆଉ ନଜର ନଦେଇ କାମରେ ଲଗିଗଲି । ମାତ୍ର ଘଣ୍ଟାକ ପରେ ସେ ଦିନର ଡାକର ଚିଠିରୁ ଜାଣିଲି ତହିଁ ପୂର୍ବଦିନ ଭୋର ଅନ୍ଦାଜ ମୋର ସକାଳ ଗାଧୋଇଗଲା ବେଳେ ଯେତେ—ବେଳେ ସେ ଅଶ୍ୱତ୍ଥ ଡାଳ ପଡ଼ିଗଲା ସେତିକି ବେଳେ ଆମ ଘରଠାରେ ଅନୁରୋଳରେ ମୋର ପିତାମହୀଙ୍କର ମୃତ୍ୟୁ ହୋଇ-ଥିଲା । ମୋର ପିତାମହୀ ମୋତେ ଅତ୍ୟନ୍ତ ଭଲ ପାଉଥିଲେ ।

---

## (୩୪)

### ଶ୍ରୀ ବିଦ୍ୟାଧର ଶତପଥୀ

ଦିନଦିନ ଭୌତିକ ବିଦ୍ୟା ଅଭ୍ୟାସ କରି ଭୌତିକ ଶକ୍ତି ବଳରେ ଅସାଧ୍ୟ ଅସାଧ୍ୟ କର୍ମ ଜଗତରେ ସାଧନ କରୁଥିଲି, ତେଇଶି ବର୍ଷ ବୟସରେ ବାଇବଲ ଅଧ୍ୟୟନ କରି ଭୌତିକ ବିଦ୍ୟା ପରିତ୍ୟାଗ କଲି, ବର୍ତ୍ତମାନ ମୁଁ ଶ୍ରୀକୃଷ୍ଣନନ୍ଦନ ମହୀଧରଙ୍କର ଶିଷ୍ୟ- ଭୂତ ପ୍ରେତ ଦ୍ୱାରା କଣ କଣ ଉପକାର ପାଉଥିଲି, ଓ କାହିଁକି ପରିତ୍ୟାଗ କଲି ତାର ସାରାଂଶ ଦେଲି ।

ବାର ବର୍ଷ ଦିନରୁ ଯାଦୁବିଦ୍ୟା ଓ ଗଣକତା ବିଦ୍ୟା ଅଭ୍ୟାସ କରି ଯାଦୁବିଦ୍ୟାରେ ବିଶେଷ ସମୟରେ ପାରଦର୍ଶିତା ଲାଭ କରିଥିଲି । ଭୂତଗଣଙ୍କର ସ୍ୱତନ୍ତ୍ର ଆମମାନଙ୍କ ପରି ପିଲା ବାଳକ, ଘରଦ୍ୱାର ଅଛି । ପ୍ରେତଗଣ ସ୍ତ୍ରୀ ମାନ—

---

ଆଉବି କହୁ ନାହିଁ ? ଏ ରାଇଜର ସେପାରେ ପଡ଼ିଛି ଅନନ୍ତ ଜଗତ ।

ସୀମା କାହିଁ, ଶେଷ କାହିଁ, ମୁଁ ଖୋଜୁଛି ଅନନ୍ତ ପଥର ଯାତ୍ରୀ ସକଳର ସମତା ସହିତ ।

ଥରେ କପିଳାସ ପାହାଡ଼ରେ ଭ୍ରମଣ କଲା ସମୟରେ ପଥଭ୍ରଷ୍ଟ ହୋଇ ଜୀବନର ଆଶା ପରିତ୍ୟାଗ କରିଥିଲି । ସନ୍ଧ୍ୟା ପର୍ଯ୍ୟନ୍ତ ଏଣେ ତେଣେ ଭ୍ରମଣ କରି ନିରାଶ ହୋଇ ଭୈରବ ମନ୍ତ୍ର ଜପ କଲି । ଚତୁର୍ଦ୍ଦିଗରୁ ହିଂସ୍ର ଜନ୍ତୁର ଭୀଷଣ ଚିତ୍କାର ଶୁଣିଲି । କୌଣସି ବିଷୟକୁ ଭ୍ରୁକ୍ଷେପ ନ କରି ଧୀର ସ୍ଥିର ଅଟଳ ଚିତ୍ତ ଏକମନ ଏକ ଧ୍ୟାନରେ ମନ୍ତ୍ର ଅଧ୍ୟୟନ କରୁଥାଏ । ପ୍ରାୟ ରାତି ୧୦ ଟା ସମୟରେ ଜଣେ କୌପୀନଧାରୀ ସାଧୁ ବେଶରେ ଭଗବାନ ମୋ ନିକଟରେ ଉପସ୍ଥିତ ହେଲେ । ତାଙ୍କୁ ଦେଖି ସହସା ଆନନ୍ଦରେ ବିହ୍ୱଳ ହୋଇ ତାଙ୍କ ପାଦ ତଳେ ପଡ଼ିଗଲି । ହଠାତ୍ ତାଙ୍କ ଶ୍ରୀମୁଖରୁ ଏହି ରବ ଶୁଣିବାକୁ ପାଇଲି "ବତ୍ସ ଭୟ କର ନାହିଁ । ତୁ ଯା ମାଗିବୁ ତା ତେବ ନିର୍ଭୟରେ ମାଗ ।"

କଣ ମାଗିବି କିଛି ସମୟ ପର୍ଯ୍ୟନ୍ତ ସ୍ଥିର କରି ପାରିଲି ନାହିଁ - ପୁନଶ୍ଚ ଦ୍ୱିତୀୟ ବାର କହିଲେ ବତ୍ସ ଭୟ କରନାହିଁ ଯା ମାଗିବାର ମାଗ ।

ଦ୍ୱିତୀୟ ବାର ତାଙ୍କର ରବ ଶୁଣି ନିର୍ଭୟ ଚିତ୍ତରେ ମାଗିଲି—ଏ ଜଗତରେ ଥିବା ଯାଏ ମହା ମହା ବିପଦ ସମୟରେ ସୁରକ୍ଷା କରି ସମସ୍ତ ଅଭାବ ଅସୁବିଧା ମୋଚନ କର । ହଠାତ୍ ଅତି ପ୍ରଫୁଲ୍ଲ ଚିତ୍ତରେ କହିଲେ ତଥାସ୍ତୁ । ସେହି ଦିନଠାରୁ ୨୩ ବର୍ଷ ପର୍ଯ୍ୟନ୍ତ ଦିନେ ହେଲେ କୌଣସି ଅଭାବ ଅସୁବିଧାର ସମ୍ମୁଖୀନ

---

ଚିରିଦିଅ, ଫାଡ଼ିଦିଅ ବକ୍ଷ, ମୁଁ ପଟିବ ସକଳ ଦଶ ।
କାହିଁକି ଏ ଜନ୍ତ୍ରଣା ? କାହିଁକି ଏତେ ରୋଗ ? ବିଟିର ଦୁଆରେ
ଭିକାରିକ ଆମେ ?
ମାଗି ମାଗି ବୁଲୁଁ, ଦିଅ ସୌଭାଗ୍ୟ ନବୋପିତା ମନ୍ତ୍ରିବ ମୁଁ ପ୍ରେମେ
ପ୍ରେମେ ।

ହୋଇ ନାହିଁ । ସେତେବେଳେ ଯା ବୁଝିଁଛୁ ସମସ୍ତ ସତ୍ମାର୍ଗରେ ଯାଇଛୁ । ଅସତ୍ ମାର୍ଗରେ କିଛି ନ ଗଲେ ହଠାତ୍ ଏକ କରୁଣ ଚିତ୍କାର ଶୁଣିବାକୁ ପାଏଁ—ଭୂତମାନଙ୍କ କୃପାରୁ ବହୁ ଭୂତଙ୍କ ସହିତ ଅନେକ ସମ୍ବନ୍ଧରେ କଥା ବାର୍ତ୍ତା କରି ଅସମ୍ଭବ ଅସମ୍ଭବ କର୍ମ ସାଧନ ଜୀବନରେ କରିଛି. ହଜାର ହଜାର ନର ନାରୀ ଏହାର ବର୍ତ୍ତମାନ ସାକ୍ଷୀ ।

ଲୌକିକ ବିଦ୍ୟା କାହିଁକି ପରିତ୍ୟାଗ କଲି ତାର ପ୍ରଧାନ କାରଣ ଭୂତ ଦ୍ୱାରା ଆତ୍ମାର ମୁକ୍ତି ନାହିଁ । ଭୂତ ସମସ୍ତ ସାଧନ କରିପାରେ, ପରିତ୍ରାଣ କରିପାରେ ନାହିଁ ।



(୬.୪)

## ଶ୍ରୀ ଗିରିଧାରୀ ନରେନ୍ଦ୍ର

ଅନେକ ଲୋକଙ୍କର ଧାରଣା ଯେ ସ୍ଥୂଳଜଗତ ଛଡ଼ା ସୂକ୍ଷ୍ମ ଜଗତ ବା ଭୌତିକ ଜଗତ ନାହିଁ । ମୋର ଧାରଣା ମଧ୍ୟ ସେହିପରି ଥିଲା ! ଭୂତ ପ୍ରେତ ମୁଁ ବିଶ୍ୱାସ କରୁଥିଲେ ମଧ୍ୟ ବେଳେ ବେଳେ ବିଶ୍ୱାସ କରୁ ନ ଥାଏ । ଗୋଟିଏ ଘଟଣା ମୁଁ ନିଜେ ଦେଖି ବିଶ୍ୱାସ କଲି । ୧୯୦୮ ମସିହାରେ ମୁଁ ସେତେବେଳେ ମାରୱାଡ଼ି ହାଇସ୍କୁଲରେ ୯ମ ଶ୍ରେଣୀରେ ପଢୁଥାଏ । ମୋର ଅଭିଭାବକ ସ୍ୱାମୀ

---

ଶବ୍ଦ, ସ୍ପର୍ଶ, ରୂପ, ଗନ୍ଧ ଯାହା କିଛି ଅଛି ସବୁତ ପ୍ରେମର ଭଣ୍ଡାର ସେହି ସବୁ ଅତିକ୍ରମି ମୃତ୍ୟୁ ପର ପାରେ ଯଦି ନାହିଁ ତହିଁକି ସବୁ ପାଇଲି ନାହିଁ ?

ପାଇବ, ପାଇବ, ସବୁତ ପ୍ରେମର ଜୁଆର ।

ଶୀଳାଗୃଷ୍ଣ ବ୍ରହ୍ମାନନ୍ଦ ଥିଲେ । ସେ ଜଣେ ସନ୍ୟାସୀ, ତାଙ୍କର ଜଣେ ଭକ୍ତ ସୂତାହାଟରେ ଥାଆନ୍ତି ମହେନ୍ଦ୍ରନାଥ ମହାନ୍ତି । ସେ ବେଳେ-ବେଳେ ତାଙ୍କ ଘରକୁ ଯିବା ଆସିବା କରନ୍ତି । ତାଙ୍କର ସାନଭାଇଙ୍କ ବାସଘର ପରେ ପରେ ତାଙ୍କ ଘରେ ଭୂତର କାରବାର ଦେଖା ଗଲା । ପ୍ରଥମେ ତାଙ୍କ ଘରେ ଲୁଗାରେ ନିଆଁ ଲାଗିବାର ଦେଖାଗଲା । କାହିଁ ନ ଥିବ ହଠାତ୍ ନିଆଁ ଲୁଗା କାନରୁ ଦେଖାଯିବାରୁ ସେହିପରି ଘରେ ନିଆଁ ହଠାତ୍ ଦେଖାଦିଏ । ତା ପରେ କୋଠା ଉପରେ ଲୁଗା ଶୁଖୁଥିବ, ଦେଖିଲାବେଳକୁ ନିଆଁ ହଠାତ୍ ଲାଗି ଲୁଗା ଜଳି ଯାଏ । ଯେତେ ଲିଭାଇଲେ ମଧ୍ୟ ଲିଭୁ ନାହିଁ । ଶେଷରେ ସମସ୍ତେ କହିଲେ ଭୂତ କେହି ପେଶିଛି । ସମାଜରେ ବିଜ୍ଞାପନ ବାହାରିଲା । ଅନେକ ଗୁଣିଆ ଆସିଲେ । ଦିନେ ହଠାତ୍ ଖାଉଥିବାବେଳେ ତାଙ୍କର ଚଟ୍ଟ ଗୁଳ ସେହିପରି ଘରେ ନିଆଁ ଲାଗିଲା । ଯେତେ ଲିଭାଇଲେ ଲିଭିଲା ନାହିଁ । ବଡ଼ ଆଶ୍ଚର୍ଯ୍ୟର କଥା, କେବଳ ଘର ଜଳିଲା ଅନ୍ୟ ଘରର ଜିନିଷ ପତ୍ର କିଛି କ୍ଷତି ହେଲା ନାହିଁ । ତା ପରେ ଅନେକଙ୍କ ମନରେ ଏହି ସନ୍ଦେହ ସୃଷ୍ଟି ହେଲା । ସବାଶେଷରେ ଜଣେ ଗୁଣିଆ ଆସି ପୂଜା କଲାରୁ ସେହିଦିନଠାରୁ ଆଉ ସେ ନିଆଁ ଲଗା ଦେଖା ଗଲାନାହିଁ । ସେଥିରୁ ମୋର ବିଶ୍ୱାସ ହେଲା ଯେ ଭୂତ ପ୍ରେତ ଶରୀର ବିଦ୍ୟମାନ ଓ ସେମାନେ କାମ କରନ୍ତି ।



---

ପୁଣିକି ବାଜିବ ମଙ୍ଗଳ ଦୁନ୍ଦୁଭି, ଚଣ୍ଡ ଚଣ୍ଡବାଳେ ଦେଇ ଯିବ ସ୍ୱରି ଆସିବ ଚୀନ୍ ନାଶିବ ବୋଲି, କହିବ ଆମକୁ ଜ୍ଞାନ, ବଜା ତେବେ ଦୁନ୍ଦୁଭି ନାଦେ ପଣ ଘଇ ।

(୬୭)

## ବଞ୍ଛାକର ପଟ୍ଟନାୟକ

ବାଲ୍ୟ ଦେବା ପାଠ ପାଚଟର୍ଦ୍ଦ ହୋଇ ମଲା । ମଲା ପରେ ଯେଉଁମାନଙ୍କ ଘର ସହିତ ତା'ର ସମ୍ପର୍କ ଥିଲା ସେମାନଙ୍କ ଘରେ ତା'ର ପ୍ରେତାତ୍ମା ଆସି ଉପଦ୍ରବ ଆରମ୍ଭ କଲା, କାହାଘରେ କେନା ଘରେ ଅଣ୍ଠି ପକାଇବା, ବାଲିମାଟି ପକାଇବା ଇତ୍ୟାଦି ତା ଉପଦ୍ରବ ଭିତରେ ପ୍ରଧାନ ।

ମୁଁ ସେତେବେଳେ ଗାଁରେ ରହୁ ନ ଥାଏ, କଂଗ୍ରେସ କାମରେ ସବୁବେଳେ ବାହାରେ ରହୁଥାଏ । ଦିନେ ଗାଁକୁ ଯାଇଥାଏ ସନ୍ଧ୍ୟାବେଳେ ଖାଇସାରି ମୋର ପ୍ରେଷ୍ଟ ଲ୍ହିଅଟି ଧରି ଚୌକି ଖଣ୍ଡିଏ ପକାଇ ବାହାର ଅଗଣାରେ ବସିଲି । ମୋଓ ମନାକଲା— ପାଠ ବାଲି ମାଟି ପକାଇବ, ପଦାରେ ବସିବାକୁ ମୁଁ ବୋଉ କଥାକୁ ଅବିଶ୍ୱାସ ମନେକଲି । କିନ୍ତୁ କହିବା ପର ମୁହୂର୍ତ୍ତରେ ବାଲିରେ ଲୋଟା ସୁଦ୍ଧା ବୁଡିଗଲା । ଘରକୁ ପଳାଇ ଆସିବାକୁ ବାଟ ପାଇଲି ନାହିଁ ।

ଦିନେ ଦିବାକର ବାବୁ (ପଟ୍ଟନାୟକ ଏମ୍. ପି.) ଆମ ଘରେ କୁଣିଆ ହୋଇଥାନ୍ତି । ସନ୍ଧ୍ୟାବେଳେ ଖାଇ ସାରି ପିଣ୍ଡା ତଳକୁ ହାତ ଧୋଇ କହିଲେ—"ମୋ ଉପରେ ବାଲି ପକାନାହିଁ ପାଠ" ଆଗରୁ ତାଙ୍କ ଆଗରେ ପାଠ ଉପଦ୍ରବ କଥା ବାଣ୍ଡି ବହୁତ ହୋଇ-

---

ଏକ ପାଗଳାମି ! ମୋ ଦେଶ, ତୋ ଦେଶ, ମୋ ଭାଷା ତୋ ଭାଷା କହି
ସଂସାରଟାକୁ ଦେଉଛ ଖୁନ୍ ଖରାବ କରି-ସବୁଭାଷାକୁ କର ଆଦର,
ଅନ୍ତର ଅନ୍ତର ପ୍ରେମ ଭର ।

ଥିଲା । ତାଙ୍କ ପାଟିରୁ କଥା ନ ସରୁଣୁ ତାଙ୍କ ଉପରେ ଗୁଡ଼ିଏ ବାଲି ଅଜାଣତ ହୋଇ ପଡ଼ିଲା । ଡବାକର ବାବୁ ଘୁନିଆ ହୋଇ ପଳାଇ ଗଲେ । ଏହିପରି ପ୍ରାୟ ଏକବର୍ଷ ପର୍ଯ୍ୟନ୍ତ ଏହିପରି ପାଟର ଉପଦ୍ରବ ଚାଲିଲା । ରାତିରେ ସମସ୍ତେ ଶୋଇଲା ପରେ ମଧ୍ୟ ପାଟ ଆସି ଢିଙ୍କିରେ ଧାନ କୁଟିବା ଶବ୍ଦ ସମସ୍ତେ ଶୁଣନ୍ତି । ବିଶେଷ କରି ଯେଉଁମାନେ ତା'ର ଅମୃତ୍ୟୁପାଇଁ ଦାୟୀଥିଲେ ସେଇମାନଙ୍କ ଘରେ ତାର ଉପଦ୍ରବ ବେଶି ଦେଖା ଯାଇଥିଲା । ଏହା ପ୍ରାୟ ୧୯୩୩-୪ ଘଟଣା । ପ୍ରାୟ ୨ ବର୍ଷ ଏହିପରି ଚାଲିବା ପରେ ତାହା ବନ୍ଦ ହେଲା ।



(୭୨)

## ପଣ୍ଡିତ ଶ୍ରୀ ଦଶରଥ ଶତପଥୀ

ଗୃହସ୍ଥ ପ୍ରମାଣ ଗୁଣୀ ବିଦ୍ୟାର ଆଜକୁ ୧୦ ବର୍ଷ ହେବ । ଆମ୍ଭ ଗ୍ରାମ ବଳରାମପୁର ଚାଳଗଡ଼ ହରିଜନ ସାହିରେ ଜଣେ କଣ୍ଡରା କବାଟ ନାମକ ଧନିଲୋକ ବାସ କରିଥାଏ ତାହାର ଜଣେ ବନ୍ଧୁ ଢେଙ୍କାନାଳ ରାଜ୍ୟରୁ ଆସି ସେ ଧନି ଲୋକ ଧାନ ଅମାର ଘରେ କଳସ ବସାଇ ଦୁଇ ତିନି ଦିନ କୌଣସି ଦେବତା ପୂଜା କଲା ପରେ ଧନିଘର ନିକଟରେ ଗୋଟିଏ ବୃଦ୍ଧ ହରିଜନର ୧ ମାତ୍ର ଭେଣ୍ଡା ପୋଷ୍ୟଥିବା ପୁଅ ଏବଂ ବୃଦ୍ଧ ତାହାର ବୃଦ୍ଧା ସ୍ତ୍ରୀ ଦୁଇଦିନ ମଧ୍ୟରେ ଝାଡ଼ା ବାନ୍ତିରେ ମରିଗଲେ । ତା ପରେ କରଣ ସାହିରେ ଗୋଟିଏ

---

ସୀମା ବିଶେ ସୀମା ନାହିଁ, ସୀମା ପାରେ ପୁଣି କେତେ କଥା ଅଛଇ
ଆମେ ସୀମାହୀନ, ମହାମହୀୟାନ୍,
ବୁଲୁ ବୁଲୁ ସକଳେ ସ୍ପର୍ଶ କରିବୁ ଯାଇ ।

ଝାଡ଼ା ବାନ୍ତିରେ ମଲ୍ଲା ଆଉ ଗୋଟିଏ ଯୁବତୀ ଝିଅ ଝାଡ଼ା ବାନ୍ତିରେ ପଡ଼ିଥାଏ, ତା ପରେ ଗ୍ରାମବାସୀ କରଣ ବ୍ରାହ୍ମଣ ହରିଜନ ବସି ବିଚାର କରିବା ସମୟେ କେତେକ ଲୋକ କହିଲେ ବଜ୍ର କବାଟ ପରେ ତାର ଜଣେ ବନ୍ଧୁ ଆସି ପୂଜା କଲା ଦିନରୁ ଏପରି ହେଉଛି । ଏକଥା ଶୁଣିବାମାତ୍ରେ ସମସ୍ତ ଗ୍ରାମବାସୀ ସେ ପୂଜା କରୁଥିବା ଲୋକକୁ ବଳାତ୍କାର ଧରି ଆଣି ଏପରି ମାଡ଼ ଦେଲେ ଯେ ସେ ଲୋକ ତଳେ ପଡ଼ି ଲୁଗାରେ ଝାଡ଼ାଫେରି ପକାଇଲା । ଲୋକେ କହିଲେ ତାର ବିଷ୍ଠା ତାକୁ ଖୋଇଦେଲେ ମନ୍ତ୍ରପଦ ଆଉ କାଟିବ ନାହିଁ । ଏ କଥା ଶୁଣି ଜଣେ ଲୋକ ତାର ବିଷ୍ଠା ମେଞ୍ଚାଏ ବାଁ ହାତରେ ଧରି ତାକୁ ଖାଅ ବୋଲି କହିବାରୁ ସେ ନାହିଁକଲା [illegible] । ଆଉ ଜବରଜସ୍ତ ତାକୁ ଖୋଇଦେଲା । ଅନେକ ମାଡ଼ ଦେବାରେ ସେ ପୂଜକ ଅଜ୍ଞାନ ହୋଇ ପଡ଼ିଗଲା । ଏହି ସମୟେ ଜବରଦସ୍ତ ତା ପାଟିରେ ବିଷ୍ଠା ପୂରାଇ ମାଡ଼ ଦେଲେ । ମାଡ଼ ଭୟରେ ପୂଜକ ବିଷ୍ଠା ଖାଇଦେଲା, ତା ପରଦିନ ସହରୁ ପଳାଇ ଗଲା । ସେହି ଦିନଠାରୁ ଗ୍ରାମରୁ ଝାଡ଼ାବାନ୍ତି ବନ୍ଦ ହୋଇଗଲା ।



---

ସୀମା ଦିଶେ ସୀମା ନାହିଁ, ସୀମା ପାରେ ପୁଣି କେତେ କଥା ଅଛଇ,
ଆମେ ସୀମା ଛାନ୍ତି, ମହାମହୀୟାନ୍, ବୁଲୁ ବୁଲୁ ସକଳେ ସ୍ମରଣ
କରିବୁ ନି ।

(୩୮)

## ବ୍ରହ୍ମବିଦ୍ୟା ସମିତିର ବ୍ରହ୍ମ-ପ୍ରାର୍ଥନା

ନିର୍ମଳ ଜୀବନ, ଉନ୍ମୁକ୍ତ ଗତି    ପୂତ ଚିତ୍ତ, ତଥ୍ୟ ଆଗ୍ରହୀ ବୁଦ୍ଧି
ବିଦୂର ସନ୍ଦେହ ଅଟେ ଅବିଶ୍ୱାସ    ବ୍ରହ୍ମବିଦ୍ୟା ବୋଧମୁଖୀ ମାନସ
ସଭିଙ୍କଠି ଆତ୍ମଜ୍ଞାନ ଯେ,
ଦେବା ଲଭିବାକୁ ତଥ୍ୟ ଉପଦେଶ
ଆତ୍ମମୁଖ୍ୟ ଅନୁକ୍ଷଣ ଯେ ।

ନିଜ ପ୍ରତି ହୋଇଥିଲେ ଅନ୍ୟାୟ    ସହିବା ସହସେ ନୋହିବ ଅଥପୁ
ପରାହ୍ୱସ ଚିତ୍ତେ କରି ପୋଷଣ    ଅବାଧେ କରିବା ମନ୍ତ ଘୋଷଣ
ଅଧ୍ୟାତ୍ମ ଆଲୋଚନାରେ ଯେ,
ଜନ ଗୋଷ୍ଠୀଙ୍କର ପକ୍ଷ ଧରିବାର
ଶୀଳ ବିକ୍ରମ ସମ୍ମାନ ଯେ ।

ମାନବ ଜାତିର ଆଗ୍ରମବଣ    ଆଦର୍ଶ ସ୍ଥିତିକି ତା ଉନ୍ନୟନ
ଏଥିରେ ସତତ ନିବେଶି ମତି    ଶାସ୍ତ୍ରୋକ୍ତ ବିଧିରେ କରିବା ଗତି
ବ୍ରହ୍ମବିଦ୍ୟା ମନ୍ଦିରର ଯେ
ଆରୋହ ପଥରେ ଏମାନ ସୁବର୍ଣ୍ଣ
ସୋପାନ ସତ୍ୟାର୍ଥୀ ନର ଯେ ।



## ଭୁବନେଶ୍ୱର ବ୍ରହ୍ମବିଦ୍ୟା ସମିତିର ସଭ୍ୟବୃନ୍ଦ :—

୧— ଶ୍ରୀ ଜଗନ୍ନାଥ ପାଢ଼ୀ
୨— ଶ୍ରୀ ସୁରେନ୍ଦ୍ର ନାଥ ଦାସ
୩— ଶ୍ରୀ ରମେଶ ପ୍ରସାଦ ମହାନ୍ତି
୪— ଶ୍ରୀ ପ୍ରହ୍ଲାଦ ମିଶ୍ର
୫— ଶ୍ରୀ ଖଗେଶ୍ୱର ରାଉତରାୟ
୬— ଶ୍ରୀ ଗୋଲକ ଚନ୍ଦ୍ର ମହାପାତ୍ର
୭— ଶ୍ରୀ ଗଜେନ୍ଦ୍ର ନାରାୟଣ ସିହ୍ନା
୮— ଶ୍ରୀ ଗୋଲକ ଚନ୍ଦ୍ର ପଟ୍ଟନାୟକ
୯— ଶ୍ରୀ [illegible] ଚରଣ ନାୟକ
୧୦— ଡା॥ ଅମ୍ବିକା ପ୍ରଧାନ
୧୧— ଶ୍ରୀ ମଦନ ମୋହନ ପାଢ଼ୀ
୧୨— ଶ୍ରୀ ଲୋକନାଥ ମଲ୍ଲିକ
୧୩— ଶ୍ରୀ ସଚ୍ଚିଦାନନ୍ଦ ଦାସ
୧୪— ଶ୍ରୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକ
୧୫— ହେମଲତା ଦାସ
୧୬— ଶ୍ରୀ ରାଜକିଶୋର ଶତପଥୀ
୧୭— ଶ୍ରୀ ପଦ୍ମ ଚରଣ ପଣ୍ଡା
୧୮— ଗୀତାରାଣୀ ମହାନ୍ତି

## ସମିତି ବିଷୟରେ ପଦେ :—

ଏହି ସମିତି ୧୯୫୪ ମସୀହା ଅକ୍ଟୋବର ୧ ତାରିଖରେ ଶ୍ରୀଯୁକ୍ତ ସୁରେନ୍ଦ୍ରନାଥ ଦାସଙ୍କ ବାସଭବନରେ ଆନୁଷ୍ଠାନିକ ଭାବରେ ପ୍ରତିଷ୍ଠିତ ହୋଇଥିଲା । କିନ୍ତୁ ଏଥିପୂର୍ବରୁ ମଧ୍ୟ ଶ୍ରୀ ଦାସଙ୍କ ବାସଭବନରେ ପ୍ରତ୍ୟେକ ଶନିବାର ଦିନ ସମସ୍ତ ସଭ୍ୟ ଓ ନିମନ୍ତ୍ରିତ ବ୍ୟକ୍ତିମାନଙ୍କ ଦ୍ୱାରା ବ୍ରହ୍ମବିଦ୍ୟା

ସଂମୁଖରେ ଧାରାବାହିକ ଭାବରେ ଆଲୋଚନା ହେଉଥିଲା । ଏହି ସମିତି ଆନୁକୂଲ୍ୟରେ Pengal Theosophical Federationର ବାର୍ଷିକ ସଭା ୧୯୫୭ ମସିହା ଏପ୍ରିଲ ମାସରେ ଭୁବନେଶ୍ୱରରେ ଅନୁଷ୍ଠିତ ହୋଇଥିଲା । ଏହି ସମିତିକୁ ଓଡ଼ିଶା ବାହାରୁ ଅନେକ ବ୍ରହ୍ମବିତ୍ ପରିଦର୍ଶନ କରିବାକୁ ଆସିଥିଲେ ଏବଂ ବକ୍ତୃତା ଦେଇଥିଲେ । ଆମେରିକାର ଜଣେ ବିଶିଷ୍ଟ ଜନୈକ ଚକ୍ରବର୍ତ୍ତୀ ଏହି ସମିତି ପରିଦର୍ଶନ କରି ଉଚ୍ଚ ପ୍ରଶଂସା କରିଥିଲେ । ଏହି ସମିତି ଦ୍ୱାରା ଆୟୋଜିତ ଗତ ବୃକ୍ଷ ଜୟନ୍ତୀଟି ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ମାନ୍ୟବର ଡଃ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଏମ୍, ଏ, ଙ୍କ ସଭାପତିତ୍ୱରେ ମହାସମାରୋହରେ ପାଳିତ ହୋଇଥିଲା ।

ପ୍ରତି ସପ୍ତାହରେ ଗୁରୁବାର ଓ ରବିବାର, ଦୁଇଦିନ ସମିତିର ସଭ୍ୟମାନଙ୍କ ଦ୍ୱାରା ବ୍ରହ୍ମବିଦ୍ୟା ଓ ତତ୍ ସମ୍ବନ୍ଧୀୟ ସାହିତ୍ୟ ବିଷୟରେ ଆଲୋଚନା ହୁଏ । ଏହି ସଭାରେ ଶ୍ରୀ ସୁରେନ୍ଦ୍ରନାଥ ଦାସ ଶ୍ରୀ ରମେଶ ପ୍ରସାଦ ମହାନ୍ତି, ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁ, ଶ୍ରୀ ପ୍ରହ୍ଲାଦ ମାର୍ଥା ପ୍ରଭୃତି ସଭ୍ୟମାନଙ୍କ ଦ୍ୱାରା ଲିଖିତ ଗଳ୍ପ, କବିତା ଓ ଆଲୋଚନାମାନ ପଠିତ ହୋଇ ପତ୍ର ପତ୍ରିକାମାନଙ୍କୁ ପଠାଯାଏ ।

## ସନନ୍ତ କୁମାର ବ୍ରହ୍ମବିଦ୍ୟା ସମିତିର ସଭ୍ୟବୃନ୍ଦ :—

୧— ଶ୍ରୀ ଶ୍ୟାମଘନ ମହାନ୍ତି
୨— ଶ୍ରୀ ରସ ନନ୍ଦ ନାୟକ
୩— ବାସନ୍ତୀ କୁମାରୀ ଦାସ
୪— ଶ୍ରୀ ଜୟମୋହନ ମହାନ୍ତି
୫— ଶ୍ରୀ ଲୋକନାଥ ସାମନ୍ତରାୟ
୬— ଶ୍ରୀ ନୃସିଂହ ଚରଣ ପଟ୍ଟନାୟକ
୭— ଶ୍ରୀ ସୁଧାକର ଭୂୟାଁ ।
୮— ଶ୍ରୀ ଗୋଲକ ଚନ୍ଦ୍ର ନାୟକ
୯— ଶ୍ରୀ ଅଧିକାରୀ ରଣା

## ସମିତି ସମ୍ବନ୍ଧରେ ଦୁଇପଦେ :—

ଏହି ବ୍ରହ୍ମବିଦ୍ୟା ସମିତି ଗତ ୧୯୬୦ ମସିହା ମେ ମାସ ୧ ତାରିଖରେ ଶ୍ରୀଯୁକ୍ତ ରସାନନ୍ଦ ନାୟକଙ୍କ ବାସଭବନରେ ଶ୍ରୀଯୁକ୍ତ ଡଃ ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଏମ. ଏ. ଏଲ, ଏଲ, ଡି, ଙ୍କ ସଭାପତିତ୍ୱରେ ସ୍ଥାପିତ ହୋଇଥିଲା ।

ପ୍ରତି ରବିବାର ସନ୍ଧ୍ୟାରେ ବ୍ରହ୍ମବିଦ୍ୟା ସଂକ୍ରାନ୍ତରେ ଆଲୋଚନା ହୁଏ । ଏଥିରେ ସମିତିର ସମସ୍ତ ସଭ୍ୟ ଅଂଶ ଗ୍ରହଣ କରନ୍ତି ।

## କଟକ ବ୍ରହ୍ମବିଦ୍ୟା ସମିତିର ସଂକ୍ଷିପ୍ତ ବିବରଣ

୧୯୧୪—୧୫ ସାଲର କଥା । କୁଳଦା ପ୍ରସାଦ ମଲ୍ଲିକ ଭଗବତରତ୍ନ କଟକ ଆସିଥିଲେ । ସେତେବେଳେ କଟକ ଲଜର ପ୍ରେସିଡେଣ୍ଟ ଶ୍ରୀ ଜାନକୀନାଥ ବୋଷ । ଶ୍ରୀ ହେମଚନ୍ଦ୍ର ଘୋଷ ସେକ୍ରେଟାରୀ, ସତ୍ୟନାରାୟଣ ସେନ ଗୁପ୍ତ ଶରତ୍ ଚନ୍ଦ୍ର ପାଲ, ରାମନାରାୟଣ ଗୁପ୍ତ, ଶ୍ୟାମସୁନ୍ଦର କାଠିଆ, ଅଧ୍ୟାପକ ଗୋପାଳ ଚନ୍ଦ୍ର ଗାଙ୍ଗୁଲି, ଦେଓ୍ୱାନ ବାହାଦୁର ଶ୍ରୀକୃଷ୍ଣ ମହାପାତ୍ର, ପ୍ରଭୃତି ସେଥିର ମେମ୍ବର ଥିଲେ ।

ମିସେସ ଆନିବେଶାନ୍ତ ହୋମରୁଲ ଆନ୍ଦୋଳନ ଆରମ୍ଭ କଲେ । ସେହି ସମୟରେ ଦରକାରୀ କର୍ମୀଗଣ ବ୍ରହ୍ମବିଦ୍ୟା ସମିତିରୁ ଅଲଗ ହୋଇଗଲେ । ଫଳରେ ବ୍ରହ୍ମବିଦ୍ୟା ସମିତିଟି ଏକପ୍ରକାର ମୃତବତ୍ ହୋଇ ପଡ଼ିଲା ।

୧୯୨୦ ସାଲରେ ଏହାର ପୁନର୍ଗଠନ କରାଗଲା । ସେତେବେଳେ ସୁରେନ୍ଦ୍ର ଦତ୍ତ, ପି, ଏନ ମୁଖର୍ଜି ଆଇ,ଇ,ଏସ୍ ଲକ୍ଷ୍ମୀନାରାୟଣ ସାହୁ ପ୍ରଭୃତି ଖୁବ ଉତ୍ସାହ ଦେଖାଇଲେ । ଜଗନ୍ନାଥ ତ୍ରିପାଠୀ ସେକ୍ରେଟେରୀ ହେଲେ । ଆରୁଣ୍ଡେଲ, ରୁକ୍ମିଣୀ ଅରୁଣ୍ଡେଲ, କାପ୍ଟେନ ମ୍ୟାକ୍ସଓ୍ୱେଲ, ଜଷ୍ଟିସ ସଦାଶିବ ଆୟର, ଇକବାଲ ନାରାୟଣ ଗୁର୍ଟୁ, ଏନ.ସି ବେଲ ପ୍ରଭୃତି କଟକ ବ୍ରହ୍ମବିଦ୍ୟା ସମିତିକୁ ଆସି ବକ୍ତୃତା ଦେଇଥିଲେ । ସେହି ସମୟରେ ଶୀଳାଗୃସ ବ୍ରହ୍ମାନନ୍ଦ ବ୍ରହ୍ମବିଦ୍ୟା ସମିତିର ପ୍ରଚାରକ । ଲକ୍ଷ୍ମୀନାରାୟଣ ସାହୁ ତାଙ୍କ ସାଙ୍ଗରେ

ଭିନ୍ନ ଜାଗାକୁ ଯାଇ ଲଜ ସ୍ଥାପନ କରିଥିଲେ । ବର୍ତ୍ତମାନ କଟକ ବ୍ରହ୍ମବିଦ୍ୟା ସମିତିର ସଭାପତି ଶ୍ରୀ ଜଗନ୍ନାଥ ତ୍ରିପାଠୀ ଅଛନ୍ତି । ସେ ବହୁବର୍ଷ ସଂପାଦକ ରହିଛନ୍ତି । ଶ୍ରୀ ହରିହର ସାହୁ ସର୍ବପ୍ରଥମ ସଂପାଦକ । କଟକଚଣ୍ଡୀଠାରେ ଶ୍ରୀ ହରିହର ମର୍ଦ୍ଦରାଜଙ୍କ ଘରେ ବର୍ତ୍ତମାନ ଲଜ ଅବସ୍ଥିତ ।

ଜାନକୀନାଥ ବେହେରଙ୍କ ପରେ ଶ୍ରୀ ଗୋପାଳ ପ୍ରହରାଜ ସଭାପତି ହେଲେ । ବାଳକୃଷ୍ଣ ବାବୁ ଅଠ ବର୍ଷ ହେଲା ମଧ୍ୟ ଏହି କଟକ ଲଜରେ ବରାବର ଦାୟିତ୍ୱ ନେଇ ରହିଛନ୍ତି । ଏହାଛଡ଼ା ଓଡ଼ିଶାରେ ବାଲେଶ୍ୱର, ଛତ୍ରପୁର, ପୁରୀ, ଢେଙ୍କାନାଳ ପ୍ରଭୃତି ସ୍ଥାନରେ ଲଜ ଗଢ଼ା ହୋଇଥିଲା କିନ୍ତୁ ସେ ସବୁ ଲୁପ୍ତ ଯାଇଛି । ଏହି ସବୁ ସମିତିକୁ ଦେଖୁଥିଲେ ବୃଦ୍ଧ ବୃଦ୍ଧ ଝୀଲ: ସ୍ୱର୍ଗୀ ବ୍ରଜମୋହନ ପାଳ ଏବଂ ଲକ୍ଷ୍ମୀନାରାୟଣ ସାହୁ ।



## ଲେଖକଙ୍କର ଅନ୍ୟାନ୍ୟ ବହି

ଗୁପ୍ତବିଦ୍ୟା, ରାମଚନ୍ଦ୍ର ମୁଦ୍ୟାରଙ୍କ ଜୀବନୀ, ମଟ୍ଟୁବୈଶ୍ୟ, ଅଜ୍ଞାତବାସ ଓ ନାରୀର ଅବମାନନା, ପ୍ୟାରୀମୋହନ, ମୁଁ ଓ ମୋର କାଳ, ଗୁରୁଗୋବିନ୍ଦ ସିଂହ, ମଧୁରେଖା (କବିତା), ବେଶ୍ୟା, ଜୀବନ ଓ ଜୀବନୀ, ତୁଳେଟ୍ୱେ, ନାଙ୍କ କବି ମାଟଙ୍କ, ବେକାସ୍ଥ ମଜା, ସ୍ତ୍ରୀଶିକ୍ଷା, ନାସ୍ତି ଚତୁ, ସାନ୍ତ୍ୱନା, ଓଡ଼ିଶା ଗଡଜାତ, ଶ୍ରୀନିବାସ ଶାସ୍ତ୍ରୀ, ଗୋଖଲେ, ତିଲକ, ଗାନ୍ଧି, ଛିନ୍ନପତ୍ର (କବିତା), ମୋ ଜୀବନ କଥା, ଅରୁଣା (କବିତା), ଭାରତ ସେବକ ସମିତ, ଶକୁନ୍ତଳା (ଏକାଙ୍କ ନାଟକ), ବାବା, ମା, ଲୁଇବ୍ରେଲୀ ଆନ୍ଦୋଳନ, ଆମ ବୋମ୍ବାଇ, ଅସ୍ପୃଶ୍ୟତା. ଅଶ୍ଳୀଳତା, ପ୍ରବାସୀ (କବିତା), ଯୌନକଥା, ମୋହନ, (କବିତା), ଆଶୀର୍ବାଦ (କବିତା) ପରଶ (କବିତା), ଦଣ୍ଡନାଟ (ପ୍ରହଲ୍ଲବ), ଚୀନଦେଶର କଥା, ଗାନ୍ଧିବିକାଶଦେଲ (ଆଦିବାସୀ ଗୀତ), ଚୌଦ୍ୱାର ଗ୍ରାମ ସଂଗଠନ ସମ୍ମିଳନୀ, ଧୂଳି, କଳିଙ୍ଗକୁମାରୀ (କାଦମ୍ବରୀ), କନକବସନ୍ତ, କଳା, ହସ୍ତପତ୍ର ଅଭିଭାଷଣ ସୁରେନ୍ଦ୍ରନାଥ ବାନାର୍ଜିଙ୍କର, ଶିକ୍ଷା, ଟଣା, ଦୂତବାଣୀ, ବୈଦ୍ୟନାଥ ସ୍ମୃତି, ଦୟାନନ୍ଦ ସରସ୍ୱତୀ, ଆନନ୍ଦ (ବୁଦ୍ଧଙ୍କ ଶିଷ୍ୟ), ଗୁରୁଜୀ, ଜପ, ଡାକୁ ଡାକୁ ଡାକେ ମୋତେ, ଓଡ଼ିଶାରେ ଜୈନଧର୍ମ, ଓଡ଼ିଶା ଓ ଜୈନଧର୍ମ, ଅଜଣା ରାଇଜ କଥା, ସାଙ୍ଗ ସାଥୀ,(କବିତା) ବିକ୍ରମ ଦେବ, ଶ୍ୱାସ, ଶ୍ୱାସାର ।

Hill Tribes of Jeypore, Prohibition, Springs of the Soul (Aboriginal songs in English translation), Fountains (poetry), From within(poetry) Orissa in 1942-44, Orissa, History of Orissa, Duduma, Konark. In pain and Sadness, poesy 4 pamphlets on Hirakud (ହିନ୍ଦୀ) ଓଡ଼ିଶାରେ ଜୈନଧର୍ମ ।



ମୁଦ୍ରାକର :—

ପ୍ରସନ୍ନ କୁମାର ମହାପାତ୍ର ବି. ଏ. (ଅନର୍ସ)

ଶ୍ରୀ ଶାରଦା ପ୍ରେସ

ମହତାବ ରୋଡ଼

ଭୁବନେଶ୍ୱର-୨

ପ୍ରଥମ ମୁଦ୍ରଣ—୧୦୦୦

୧୯୬୦